# କୁଷ୍ଠ ରୋଗ ପାଠ୍ୟପୁସ୍ତକ

ପ୍ରଣେତା:—

ରାଓ ବାହାଦୁର ଏମ୍. ଭି. ଆପ୍ପାରାଓ,

ଯୁଗ୍ମ ଅନାହାରୀ ସମ୍ପାଦକ,

ଗଞ୍ଜାମ ଜିଲ୍ଲା କୁଷ୍ଠ ନିବାରଣୀ ସମିତି,

ପ୍ରକାଶକ:—

ଗଞ୍ଜାମ ଜିଲ୍ଲା କୁଷ୍ଠ ନିବାରଣୀ ସମିତି,

ବ୍ରହ୍ମପୁର ( ଗଞ୍ଜାମ )

# କୁଷ୍ଠ ରୋଗ ପାଠ୍ୟପୁସ୍ତକ


ପ୍ରଣେତା:—

ରାଓ ବାହାଦୁର ଏମ୍. ଭି. ଅପ୍ପାରାଓ

ଯୁଗ୍ମ ଅବୈତନିକ ସମ୍ପାଦକ,

ଗଞ୍ଜାମ ଜିଲ୍ଲା କୁଷ୍ଠ ନିବାରଣୀ ସମିତି

ବ୍ରହ୍ମପୁର (ଗଞ୍ଜାମ)

ଅନୁବାଦକ

ଶ୍ରୀ ଈଶ୍ୱର ସାହୁ,

ଶିକ୍ଷକ, ମୁନସିପାଲ୍ ମିଡ଼ଲ୍ ସ୍କୁଲ, ବ୍ରହ୍ମପୁର



(ଦ୍ୱିତୀୟ ସଂସ୍କରଣ)

ଭାରତୀ ପ୍ରେସ୍

ବ୍ରହ୍ମପୁର (ଗଞ୍ଜାମ)

ମୂଲ୍ୟ

୧୯୩୯



HIS EXCELLENCY

**Sir John Austen Hubback,**

K. C. S. I., I. C. S.,

THE GOVERNOR OF ORISSA

***(Whose Message appears on another page).***

ମାନ୍ୟବର ଓଡ଼ିଶା ଗଭର୍ଣ୍ଣର

## ସାର୍ ଜନ୍ ହବାକ୍, କେ.ସି.ଏସ୍.ଆଇ., ଆଇ.ସି.ଏସ୍.

ମହୋଦୟଙ୍କ

# ଶୁଭ-କାମନା

---

"ଓଡ଼ିଶାକୁ କୁଷ୍ଠ ରୋଗରୁ ରକ୍ଷା କରିବା ବିରାଟ କାମରେ ଯେଉଁମାନଙ୍କ ହାତ ଅଛି, ସେମାନଙ୍କ ନିକଟରେ ମୁଁ ଏ ମୂଲ୍ୟବାନ୍ ବହିଟିର ସୁଖ୍ୟାତି କରେ । ଉକ୍ତ ବିରାଟ କାମରେ ରାଓ ବାହାଦୁରଙ୍କ ଅଂଶ ଖୁବ୍ ଅଧିକ ହେଲଣି । ଏ ବହି ତାହା ବୃଦ୍ଧି କରୁଛି । ତାଙ୍କପରି ସହସ୍ର ଲୋକ ଥିଲେ ମୁଁ ସୁଖୀ ହୁଅନ୍ତି ।"

# ପୂର୍ବାଭ୍ୟାସ

ଗାଁ ଗହଳରେ ଲୋକଙ୍କୁ କୁଷ୍ଠ ସମ୍ବନ୍ଧେ ଶିକ୍ଷା ଦେବାପାଇଁ, ରୋଗୀମାନଙ୍କୁ କୁଷ୍ଠ ଚିକିତ୍ସା କେନ୍ଦ୍ରରେ ଯୋଗ ଦେବାକୁ ପ୍ରବର୍ତ୍ତାଇବା ପାଇଁ ଏବଂ ସଂକ୍ରାମକ ରୋଗୀଙ୍କୁ ଅଲଗା କରି ରଖିବା ପାଇଁ ସଂଗଠିତ ପ୍ରଚାର ସମ୍ପୂର୍ଣ୍ଣ ଆବଶ୍ୟକ ।

ସ୍କୁଲ ଶିକ୍ଷକ ଓ ଛାତ୍ରମାନଙ୍କୁ, ଏବଂ ଜନସାଧାରଣଙ୍କୁ କୁଷ୍ଠ ସମସ୍ୟାରେ ଅଭିଜ୍ଞ କରିବା ହେଉଛି କୁଷ୍ଠ ସମ୍ବନ୍ଧୀୟ ପ୍ରଚାରର ଏକ କାର୍ଯ୍ୟକାରୀ ଉପାୟ । ଏହି ଉଦ୍ଦେଶ୍ୟରେ ଟ୍ରେନିଂ କ୍ଲାସମାନଙ୍କରେ, କଲେଜ, ହାଇ, ମିଡ଼ିଲ ଓ ପ୍ରାଇମେରୀ ସ୍କୁଲମାନଙ୍କରେ କୁଷ୍ଠ ସମ୍ବନ୍ଧେ ସାଧାରଣ ଭାବରେ ତଥ୍ୟ ଶିକ୍ଷା ଦେବାପାଇଁ ବନ୍ଦୋବସ୍ତ ହେବା ଲୋଡ଼ା । ଏହିପରି ଶିକ୍ଷାଦାନ ନିମନ୍ତେ କୁଷ୍ଠ ସମ୍ବନ୍ଧେ ସାଧାରଣ ପାଠ୍ୟକ୍ରମ ସମ୍ବଳିତ, ଜନସାଧାରଣଙ୍କ ଜାଣିବା କଥା ଯେ ସମ୍ବନ୍ଧେ ଜଣାଇବା ଉଚିତ, ଏହି ସବୁ ଉପଦେଶ ଥାଇ ଖଣ୍ଡିଏ ପାଠ୍ୟ ପୁସ୍ତକ ଆବଶ୍ୟକ । ଏବଂ ଏହିପରି ପୁସ୍ତକ ଖଣ୍ଡେ ସ୍କୁଲରେ ପ୍ରଚଳିତ ହେଲେ ଶିକ୍ଷକମାନେ ତାହା ପାଠକରି ଛାତ୍ରଙ୍କୁ ସେ ସମ୍ବନ୍ଧେ ବୁଝାଇବେ । ସମାଜ ସେବକଙ୍କ କାମରେ ସୁଦ୍ଧା ଏହା ଲାଗିବ । ଏହା ପଠନ କରି ଚିକିତ୍ସା କେନ୍ଦ୍ରରେ କୁଷ୍ଠ ରୋଗୀଙ୍କୁ ସେ ନିଜେ ଏ ସମ୍ବନ୍ଧେ କହିବେ । ଏହାଙ୍କୁ ସେମାନଙ୍କ ଗ୍ରାମକୁ ଯାଇ କାମ କରିବାକୁ ପ୍ରବର୍ତ୍ତାଇବାକୁ ହେବ । ଯେଉଁମାନଙ୍କର ରୋଗ ଏ ପର୍ଯ୍ୟନ୍ତ ଅଜଣା ହୋଇ ରହିଛି, ସେମାନଙ୍କୁ ଚିକିତ୍ସା କେନ୍ଦ୍ରକୁ ଆଣିବାପାଇଁ ଓ ନିୟମିତ ଭାବରେ ଚିକିତ୍ସିତ ହେବାପାଇଁ ସେ ଯତ୍ନଶୀଳ ହେବେ । ଗ୍ରାମରେ କାମ କରିବା ସମାଜ ସେବକଙ୍କ ଠାରୁ ଓ ସ୍କୁଲ ପିଲଙ୍କ ଠାରୁ ନିରକ୍ଷର ଲୋକେ ଏ ପୁସ୍ତକ ବିଷୟ ଅବଗତ ହୋଇ ପାରିବେ ।

# ସୂଚୀପତ୍ର

## ବିଷୟ

ଅଧିକନ୍ତୁ, ଲୋକମାନେ ଯେତେ ବୁଝିବେ ଓ ସହଯୋଗ କରିବେ, ଏ କୁଷ୍ଠ ନିବାରକ ବ୍ୟବସ୍ଥା ତେତେ ସଫଳ ହେବ । ସୁତରାଂ କୁଷ୍ଠରୋଗ ଓ ତାର ବିଷମୟ ପରିଣାମ ଓ ଚିକିତ୍ସା ବିଷୟକ ଚିନ୍ତା ସମ୍ବଳିତ ଏହିପରି ଖଣ୍ଡେ ପୁସ୍ତକ ସହାୟତାରେ ସାଧାରଣ ଲୋକଙ୍କ ବିଷୟ ଅବଗତ କରାଇବା ଆମର କର୍ତ୍ତବ୍ୟ । ତାହାହେଲେ ସେମାନେ ସହଜରେ ବିଷୟ ବୁଝିବେ, ଏ କାର୍ଯ୍ୟରେ ସହଯୋଗ କରିବେ ଏବଂ ଏ ସମସ୍ୟାର ସନ୍ତୋଷଜନକ ସମାଧାନ ହେବ ।

ଶ୍ରୀଯୁକ୍ତ ଏ. ଡୋନାଲଡ୍ ମିଲର୍ ତାଙ୍କର 'କୁଷ୍ଠ ସମସ୍ୟା'ନାମକ ବହିରେ କହିଛନ୍ତି ସମସ୍ତ ଦେଶବାସୀ ଓ ଗ୍ରାମର ମୁଖ୍ୟ ଲୋକେ କଅଣ କରିବାକୁ ହେବ ଜାଣିପାରିଲେ ଏବଂ ତାହା କଲେ ଭାରତକୁ କୁଷ୍ଠ ହାତରୁ ରକ୍ଷା କରିବା ପାଇଁ କାର୍ଯ୍ୟ ବହୁତ ଅଗ୍ରସର ହୋଇପାରେ ।

ଗଞ୍ଜାମ ଜିଲ୍ଲା କୁଷ୍ଠ ସଂଘର ସୁଗ୍ୟ ଅବୈତନିକ ସମ୍ପାଦକ ରୂପେ ମୋର ଅଭିଜ୍ଞତା ଯୋଗୁଁ ଏ ବହି ପ୍ରଣୟନ କଲି । ଅବଶ୍ୟ ମୁଁ ଜଣେ ଆରୋଗ୍ୟ ଉପଦେଷ୍ଟା (Sanitarian) କୁଷ୍ଠ ବୈଜ୍ଞାନିକ (Lepro-logist) ନୁହେଁ । ଏ ଭାବଗୁଡ଼ିକ ମୋ ନିଜର ନୁହେଁ । ଯେଉଁ ଶିକ୍ଷକ ଛାତ୍ର ଓ ସମାଜ ସେବକଙ୍କ ନିମନ୍ତେ ଏ ପୁସ୍ତକ ଉଦ୍ଦିଷ୍ଟ, ସେମାନଙ୍କର ଓ ଜନସାଧାରଣଙ୍କ ଏହା ଦ୍ୱାରା କୌଣସି ଉପକାର ସାଧିତ ହେଲେ ମୋର ଉଦ୍ଦେଶ୍ୟ ସିଦ୍ଧି ହେବ ।

ଡ଼ାକ୍ତର ଇ. ମୁଇର୍ ଓ ମିଃ ଏ. ଡୋନାଲଡ୍ ମିଲରଙ୍କ ଠାରେ ମୁଁ ଋଣୀ । ସେମାନଙ୍କର ବହୁ ଉପଦେଶପୂର୍ଣ୍ଣ ଓ ଉପଯୋଗ

ବନ୍ଧୁ ସବୁ ପଢ଼ି ସେଥିରୁ କେତେକ ବିଷୟ କୌଣସି ପରିବର୍ତ୍ତନ ନକରି ଦେଇଛୁ । ବ୍ରିଟିଶ ସାମ୍ରାଜ୍ୟ କୁଷ୍ଠ ସମିତି (ଭାରତୀୟ ସଂଘଙ୍କ "କୁଷ୍ଠ ସମ୍ବନ୍ଧେ ଜନସାଧାରଣଙ୍କ କର୍ତ୍ତବ୍ୟ" ଓ କୁଷ୍ଠ ରୋଗ ସମ୍ବନ୍ଧେ ଛଅ ଗୋଟି ବିଶେଷ କର୍ତ୍ତବ୍ୟ ବକ୍ତୃତା ଏବଂ ସାଧାରଣ ସ୍ୱାସ୍ଥ୍ୟ ବିଭାଗର ୧୦୭ ନମ୍ବର ପତ୍ରିକାର ଚିତ୍ରଗୁଡ଼ିକ ବ୍ୟବହାର କରିଥିବାରୁ ସେମାନଙ୍କୁ ଧନ୍ୟବାଦ ଦେଉଅଛୁ । ଅନ୍ୟ ଯେଉଁମାନଙ୍କ ବନ୍ଧୁ ପଢ଼ିଛୁ ଏବଂ ଯେଉଁ ବନ୍ଧୁମାନେ ଏ ପୁସ୍ତକ ପ୍ରଣୟନରେ ମୋତେ ସାହାଯ୍ୟ କରିଛନ୍ତି ସେମାନଙ୍କୁ ମଧ୍ୟ ମୋର ଧନ୍ୟବାଦ । ଶ୍ରୀଯୁକ୍ତ ଈଶ୍ୱର ସାହୁ ଓ ଭି. ଭି. ଅପ୍ପାରାଓ ପାତ୍ରୁଲୁ ଏ ବନ୍ଧୁ ଯଥାକ୍ରମେ ଓଡ଼ିଆ ଓ ତେଲୁଗୁରେ ଅନୁବାଦ କରିଥିବାରୁ ସେମାନଙ୍କୁ ଧନ୍ୟବାଦ ଅର୍ପଣ କରେ ।

ଏମ୍. ଭି. ଅପ୍ପାରାଓ

୩୦-୩-୩୯

Fig. No. 8

ଉପରେ ଯେଉଁ ଅସୁସ୍ଥ ରୋଗୀକୁ ଦେଖୁଅଛ ତାହାର ନାକରୁ ରୋଗର ବୀଜ ତାହାର ତକିଅରେ ଲାଗିଅଛି । ତାର ପୁଅ (ଉଲଙ୍ଗ) ସେହି ତକିଆରେ ଶୋଇଅଛି ।





ରାଓ୍ ବାହାଦୁର ଏମ୍· ଭି· ଆପ୍ପାରାଓ

ଗ୍ରନ୍ଥକର୍ତ୍ତା,

Fig. No. 3.

ଯେଉଁ ପାଗ ମାଢ଼ ପୁଅ ଢଙ୍କଅରେ ଶୋଇଥିଲା ସେହୁ ପାଗ
ଗାଲରେ ରୋଗରେ ଚିକିତ୍ସା ପାଇଛି ।



Fig. No. 4.

ଏହିପରି ଭାବେ (ମିଳାମିଶା) କୁଷ୍ଠୀ ମା ଠାରୁ ପାଞ୍ଚୋଟି ପିଲା ରୋଗାକ୍ରାନ୍ତ ହୋଇ ଅଛନ୍ତି ।



Fig. No. 5.

ଉଚାର କୁଷ୍ଠୀ ଦ୍ୱାରା ରୋଗ ପ୍ରାୟ ସଞ୍ଚାଳିତ ହୁଏ ନାହିଁ ।
କାରଣ, ଅଧିକାଂଶଙ୍କ ଦେହରେ ରୋଗର ବୀଜ ଥାଏ ନାହିଁ ।



ଭିକାରିଙ୍କର ରୋଗ ଜୀବାଣୁ ନଷ୍ଟ ହୋଇଥାଏ । କେବଳ ଦେହ ଉପରେ ବିକୃତ ଚିହ୍ନ ସବୁ ରହିଥାଏ । ସେମାନଙ୍କ ଦେହର ଘାଆ ଗୁଡ଼ିକ ବଡ଼ କଦର୍ଯ୍ୟ ଦିଶେ । ସ୍ନାୟୁ ନଷ୍ଟ ହେବା ଯୋଗୁଁ ଘାଆ ହୋଇଥାଏ । ତାର ବହୁ କାଳ ଆଗରୁ ସ୍ନାୟୁ ନଷ୍ଟ ହୋଇଥାଏ । ସେଥିରେ କୁଷ୍ଠ ଜୀବାଣୁ ନଥାଏ । ଅଧିକନ୍ତୁ, ଲୋକେ ଏହି ଭିକାରି-ମାନଙ୍କ ନିକଟକୁ ଆସନ୍ତି ନାହିଁକି ଏମାନଙ୍କ ସଙ୍ଗେ ମିଶନ୍ତି ନାହିଁ ।

୫ ନମ୍ବର ନିଦ୍ରେ—କୁଷ୍ଠରୋଗୀ ଭିକାରୀମାନଙ୍କ ଦ୍ୱାରା ରୋଗ କଦାଚିତ ପ୍ରସାର ହୋଇଥାଏ । ଅଧିକାଂଶ ରୋଗୀର ରୋଗ-ଜୀବାଣୁ ନଷ୍ଟ ହୋଇଥାଏ ।

— ୩ —

## କୁଷ୍ଠ ରୋଗର କାରଣ

ଏକ ପ୍ରକାର ଜୀବାଣୁ କୁଷ୍ଠ ରୋଗ ଜାତ କରେ । ଏହା ଏତେ ଛୋଟ ଯେ ଖାଲି ଆଖିରେ ଦେଖାଯାଏ ନାହିଁ । କେତେକ ରୋଗୀ ଛିଙ୍କିଲେ କିମ୍ବା ସିଁକିଲେ ଏହି ଜୀବାଣୁ ଗୁଡ଼ିକ ବାହାରି ପଡ଼େ । ଏହି ସବୁ ଅତି ଅଳ୍ପ ସଂଖ୍ୟାରେ ବାହାରେ । କେତେକ ରୋଗୀର ମଧ୍ୟ ବାହାରେ ନାହିଁ । ଯେତେ ଅଧିକ ସଂଖ୍ୟାରେ ଦେହରେ ଜୀବାଣୁ ଥାଏ ରୋଗ ଖେଳାଇବା ପାଇଁ ସେତେ ଅଧିକ ବାହାରେ । ଦେହର ଉପର ଭାଗରେ ଯେତେ ଜୀବାଣୁ ଲାଗି ରହିଥାନ୍ତି, ଅନ୍ୟ ଲୋକଙ୍କଠାକୁ ଯିବାର ସେତେ ସହଜ ହୁଏ ।

କୁଷ୍ଠରୋଗୀ ମୌଳିକ ନୀତି ଏହି ରୋଗର ଗତି ନିୟନ୍ତ୍ରଣ କରେ—

(୧) ଅଳ୍ପ ସଂଖ୍ୟାରେ ସ୍ନାୟୁବାହୁ ଶ୍ରେଣୀର ଜୀବାଣୁ ।

(୨) ବହୁ ସଂଖ୍ୟାରେ ଚର୍ମଗତ ଶ୍ରେଣୀର ଜୀବାଣୁ ।

(୩) ଚର୍ମ ଓ ସ୍ନାୟୁ ଶ୍ରେଣୀୟ ଜୀବାଣୁ ଓ
(୪) ପରସ୍ପର ସ୍ବତନ୍ତ୍ର ଶ୍ରେଣୀର ।

ନିଆଁ ଘର ଭିତରେ ଥିଲେ ପର୍ଯ୍ୟନ୍ତ ଅନ୍ୟ ଘରକୁ ପୋଡ଼େ ନାହିଁ । ଦେହାକୁ ବାହାର ନଥିବା ଜୀବାଣୁ ଏହି ଘର ଭିତର ନିଆଁ ପରି । କିନ୍ତୁ ନାସିକାରୁ ବାହାରିବା ଜୀବାଣୁ ଜଳନ୍ତା ଘର ପରି ପାଖ ପଡ଼ିଶା ଲୋକଙ୍କର ବିପଦର କାରଣ ।

୬ ନମ୍ବର ଚିତ୍ର—କୁଷ୍ଠ ରୋଗର ଜୀବାଣୁ । ଅସଲ ଜୀବାଣୁକୁ ଏକ ହଜାର ଗୁଣ ବଡ଼ କରାଯାଇଛି ।

— ୪ —

## କୁଷ୍ଠରୋଗ ଛୁଇଁଲା ବୋଲି ସନ୍ଦେହ ହେଲେ-

କୌଣସି ଲୋକ ଯଦି ତାର କୁଷ୍ଠରୋଗ ହୋଇଛି ବୋଲି ସନ୍ଦେହ କରେ, ତତ୍‌କ୍ଷଣାତ୍ ସେ ସୁଦକ୍ଷ ଚିକିତ୍ସକଙ୍କ ନିକଟକୁ ଯିବା ଦରକାର । ତାହା ଅନ୍ୟ ସାମାନ୍ୟ ରୋଗ ହୋଇଥିଲେ ସୁଦ୍ଧା, ଚିକିତ୍ସକଙ୍କୁ ଦେଖାଇଲେ କୌଣସି କ୍ଷତି ନାହିଁ । କିନ୍ତୁ କୁଷ୍ଠ ରୋଗ ହୋଇଥିଲେ ତତ୍‌କ୍ଷଣାତ୍ ଉପଯୁକ୍ତ ଚିକିତ୍ସା କଲେ ରୋଗୀ ଶୀଘ୍ର ଭଲ ହୁଏ । ବିଳମ୍ବ କଲେ ଭଲ ହେବା କଷ୍ଟକର ଏବଂ ତାର ଚିକିତ୍ସା ମଧ୍ୟ ବହୁତ ଦୀର୍ଘ ସମୟ କରିବାକୁ ପଡ଼େ ।

୭ ନମ୍ବର ଚିତ୍ର—ବାଳକ ଠାରେ ରୋଗ ହେବା ସନ୍ଦେହ କରି ଡାକ୍ତରଙ୍କ ନିକଟକୁ ନିଆଯାଉଅଛି ।

— ୫ —

## ଚିକିତ୍ସାରେ ରହିବା କାଳରେ ପାଳନୀୟ ନିୟମ

କୁଷ୍ଠରୋଗୀ ଚିକିତ୍ସାରେ ରହିଲେ ବେଳେ ଜୀବନରେ ଏହି କେତୋଟି ନିୟମ ପାଳନ କରିବେ —

Fig. No. 6.

କୁଷ୍ଠରୋଗର ଜୀବାଣୁ ଅଣୁବୀକ୍ଷଣ ଯନ୍ତ୍ରରେ
ସହସ୍ରଗୁଣ ପରିବର୍ଦ୍ଧିତ ।



Fig. No. 6 A.

ଅବରୁଦ୍ଧ ଗୃହରେ ଅବନତ ଭାବେ ଅତିରିକ୍ତ ପରିଶ୍ରମ
କ୍ଷୟରୋଗାକ୍ରାନ୍ତ ହେବା ପକ୍ଷେ ସାହାଯ୍ୟ କରେ ।



Fig. No. 7.

କୁଷ୍ଠ ରୋଗର ଚିହ୍ନ ଶରୀରେ ଯଦି ସନ୍ଦେହ ହୁଏ, ଡାକ୍ତରଙ୍କୁ ଦେଖାଅ ।



Fig. No. 8.

ନିୟମିତ ବ୍ୟାୟାମ୍ ଲୁପ୍ତ ନବାରଣଠର ସହାୟ କରେ ।



Fig. No. 8 A.

ଯକ୍ଷ୍ମା ରୋଗର ପ୍ରତିଷେଧ ଓ ଚିକିତ୍ସା ସକାଶେ

ନିମ୍ନସ୍ଥ ବ୍ୟାୟାମ କରିବାକୁ ହେବ ।



ABDOMINAL EXERCISE. ARM EXERCISE. LEG EXERCISE.



BREAST EXERCISE. KNEE BENDING EXERCISE.



STOOPING EXERCISE. SKIPPING. WALKING

Fig. No. 9

ପ୍ରଫୁଲ୍ଲ ମନ ଏବଂ କାର୍ଯ୍ୟକାରୀ ଶରୀରକୁ କୁଷ୍ଠ ରୋଗ କ୍ୱଚିତ୍ ଆକ୍ରମଣ କରିଥାଏ ।



(୧) ମାଲେରିଆ, କୃମିରୋଗ, କୋଷ୍ଠବଦ୍ଧ ଇତ୍ୟାଦି ଅନ୍ୟ ରୋଗମାନଙ୍କରୁ ମୁକ୍ତ ରହିବାକୁ ହେବ । ଏହି ସବୁ ରୋଗ ତାକୁ ଦୁର୍ବଳ କରିପକାନ୍ତି । ଦୁର୍ବଳ ହେଲେ କୁଷ୍ଠ ଜୀବାଣୁ ସହିତ ତା ଦେହ ଲଢି-ପାରିବ ନାହିଁ ।

(୨) ସାଧାରଣତଃ ମନ ପ୍ରଫୁଲ୍ଲ ରହିବାକୁ ଚେଷ୍ଟା କରିବ । ସେଥିପାଇଁ ଉପଯୁକ୍ତ ଖାଦ୍ୟ ଗ୍ରହଣ ଓ କସରତ ବା ପରିଶ୍ରମ କରିବ । ଦରକାର ହେଲେ ବଡ଼ଲୋକ ଦ୍ୱାରା ଚିକିତ୍ସା କରାଇବ ।

(୩) ଯଥେଷ୍ଟ ବ୍ୟାୟାମ କରିବ, (ବୁଲାବୁଲି, ଦେଶୀ କସରତ, ବ୍ୟାୟାମାଦି) ଏହାଦ୍ୱାରା ମାଂସପେଶୀ ବଢିବ ଏବଂ ଦୃଢ ଓ ବଳିଷ୍ଠ ହୁଏ । ତାହାହେଲେ ତାର ଶରୀର କୁଷ୍ଠ ରୋଗ ସହିତ ବେଶ ଲଢି ପାରିବ ।

(୪) ଭୋଜନ ପାନ, ନିଦ୍ରା, ସ୍ନାନ, ବୁଲାବୁଲି ବ୍ୟାୟାମ ଠିକ ସମୟରେ ଓ ଠିକ ନିୟମରେ କରିବ । ନିର୍ମଳ ବାୟୁ ଓ ଆଲୋକରେ ରହିବ । ଘର ଓ ବାହାର ନିର୍ମଳ ଓ ଆଲୋକମୟ କରି ରଖିବ ।

(୫) ସଜ, ପୁଷ୍ଟିକାରକ ଖାଦ୍ୟ ମାତ୍ର ତାର ପଥ୍ୟ ହେବ । ଯଥେଷ୍ଟ ପରିମାଣରେ ନିରୋଳା କ୍ଷୀର, ଲହୁଣୀ, ଫଳ ଓ ପରିବା (କଞ୍ଚା ଓ ସିଝା) ଓ ନିରୋଳା ଗହମ ରୁଟି ଖାଇବ । ଅଳ୍ପ ପରିମାଣରେ ସଜ ମାଛ ମାଂସ ଖାଇପାରେ । ମାଦକ ଦ୍ରବ୍ୟ, ଗରମମସଲା ଓ ସର୍ବପ୍ରକାର ବିଳାସକର ଖାଦ୍ୟ ନିଷେଧ ।

୮ ନମ୍ବର ଚିତ୍ର—ସ୍ୱାସ୍ଥ୍ୟକାରକ ବ୍ୟାୟାମ କରିବା ଲୋକ କୁଷ୍ଠ ସଙ୍ଗେ ସହଜରେ ଲଢେଇ କରିପାରେ ।

୯ ନମ୍ବର ଚିତ୍ର – ପ୍ରଫୁଲ୍ଲ ମନ ଓ କର୍ମରତ ଦେହକୁ ଏ ରୋଗ ଆସେନାହିଁ ।

Fig. No. 10

ପରିଷ୍କାର ଗୃହ;
ଗୃହ ଓ ତାହାର ପାର୍ଶ୍ୱବର୍ତ୍ତୀ ସ୍ଥାନ ପରିଷ୍କାର ରଖିବ ।



Fig. No. 11

ଉପଛଷ୍ଟାର ଘର ।

କୁଷ୍ଠ ଉପଛଷ୍ଟାଙ୍କର ରୋଗ ॥



(ଗ) ୧୫ ନମ୍ବର ଚିତ୍ର—ମଧ୍ୟ ଓ ସଂକ୍ରାମକ ଅବସ୍ଥା । ଏ ଅବସ୍ଥାରେ ଚର୍ମ ଟୁକ୍ଡ଼ିକ ଲାଲ ହୋଇ ଫୁଲିଥାଏ । କାନ ଓ କପାଳ ମୋଟା ହୋଇ ଥାଏ । ଦେହଯାକ ଟିକା ଟିକା ଫୁଲା ଦେଖାଯାଏ । ବହଳ ଓ ଫୁଲା ଥିବା ସ୍ଥାନମାନଙ୍କରେ କୁଷ୍ଠ ଜୀବାଣୁ ରହିଥାଏ । ଏହି ସ୍ଥାନକୁ କୁଣ୍ଡାଇଲେ ବା ଘଷିଲେ ସେଥିରୁ ବାହାରି ଜୀବାଣୁ ବ୍ୟାପିଥାଏ । ଏହି ଅବସ୍ଥାର ଅଧିକାଂଶ ରୋଗୀଙ୍କର ନାସିକାରେ ଘାଆ ଥାଏ । ଏହି ଘାରୁ ପୂଜ ବହିଲେ ତା ସହିତ ବହୁ କୁଷ୍ଠଜୀବାଣୁ ବାହାରି ଥାଏ ।

(ଘ) ରୋଗ ବୃଦ୍ଧି ପାଇଥିବା ଅଡ଼ୁଆଁ ଅବସ୍ଥା ।

୧୬ ନମ୍ବର ଚିତ୍ର – ରୋଗୀର କଖ ହାତ । ଏହି ବିକୃତ, ଖଣ୍ଡିଆ, ଘା, ଘଉଡ଼ ଅବସ୍ଥାରେ ବ୍ୟାଧି ନଷ୍ଟ ହୋଇ ଯାଇଥାଏ । ରୋଗୀ କୁଷ୍ଠରୁ ମୁକ୍ତ ହୁଏ ସତ, କିନ୍ତୁ ଏପରି ଖଣ୍ଡିଆ ହୋଇଥାଏ ଯେ ତାହା ଆଉ କଅଁଳେ ନାହିଁ । ଏ ଅବସ୍ଥାକୁ ଜୀବନ୍ତ ମରଣର ଶେଷ ବେଳା କହନ୍ତି, କାରଣ ଏ ରୋଗ ଲୋକକୁ ମାରିଦିଏ ନାହିଁ ।

— ୮ —

## ରୋଗ ସଂକ୍ରାମକ ଅବସ୍ଥାରେ ଅଛି କି ନାହିଁ ଜାଣିବା ଉପାୟ

କୁଷ୍ଠ ରୋଗର ସର୍ବ ପ୍ରକାର ଅବସ୍ଥା ଚହ୍ନିବା ସମ୍ଭବ, କିନ୍ତୁ ରୋଗର ଚିହ୍ନ ସବୁ ରୋଗୀ ଘୋଡ଼ାଇ ରଖିବାରୁ କେହି ତାହା ଜାଣି ପାରନ୍ତି ନାହିଁ । ଗ୍ରାମ ଲୋକେ ରୋଗକୁ ଚିହ୍ନନ୍ତି । କିନ୍ତୁ ରୋଗର ଶେଷ ଅବସ୍ଥାକୁ ଢ଼ଆଁ ଅବସ୍ଥା ବେଳ ଭୟ କରନ୍ତି । ଯୁହିଁରେ

Fig. No. 17.

ଢ଼ିଅଁ ଅବସ୍ଥାରେ ସିଂହ ବଦନ ରୋଗୀ



ବହୁଳିଆ ଫଳବା ଦାଗ ଦେଖିଲେ ତାହା ସାଧାରଣତଃ ହୃଆଁ ଅବସ୍ଥା ବୋଲି ଜାଣିବାକୁ ହେବ । ଅଳ୍ପ କେତେ ରୋଗୀ ପୁଣି ସେମାନଙ୍କର ରୋଗ-ଜୀବାଣୁ ବୁଣି ଯାଆନ୍ତି; କିନ୍ତୁ ସେମାନଙ୍କର ହୃଆଁ ଅବସ୍ଥା ଲୋକେ ଚିହ୍ନି ପାରନ୍ତି ନାହିଁ ।

— ୧ —

## କେଉଁ ବୟସର ଲୋକଙ୍କୁ ହେଇଁବା ସମ୍ଭାବନା

ବୟସ ତାରତମ୍ୟରେ ରୋଗ ଛୁଇଁବାରେ ପ୍ରଭେଦ ମଧ୍ୟ ରହେ । ତିନି ବର୍ଷରୁ କମ ବୟସ ପିଲାଙ୍କର ରୋଗ ପ୍ରତିରୋଧ କରିବାର କ୍ଷମତା ନାହିଁ । ତିନିବର୍ଷ ହେଇଁଲେ ପ୍ରତିରୋଧ କ୍ଷମତା ଜନ୍ମେ । କୋଡ଼ିଏ ବର୍ଷରୁ ଅଧିକ ବୟସର ଲୋକେ ମଧ୍ୟ ଏ ରୋଗରେ ପଡନ୍ତି-- ଏ ସଂଖ୍ୟାରୁ ପୁରୁଷ ଦୁଇ ଗୁଣ ଓ ସ୍ତ୍ରୀ ଏକଗୁଣ ମାତ୍ର । ପିଲାମାନେ ଏ ରୋଗରେ ଶୀଘ୍ର ପଡ଼ିବାର ନାନା କାରଣ ଅଛି —

(୧) ପିଲାମାନଙ୍କ ଚର୍ମ ବଡ଼ ସୂକ୍ଷ୍ମ — ରୋଗ ଜୀବାଣୁ ତାହା ସହଜରେ ଭେଦ କରି ଦେହ ଭିତରେ ପଶିପାରେ ।

(୨) ଏମାନଙ୍କର ନାକ ଖୋଳିବା ଅତି ମାମୁଲି କଥା । ତାଙ୍କଠାରେ ଅନେକ ଘଟଣାରେ ନାସାନାଡ଼ିରୁ ପ୍ରତିକ୍ରିୟା ମୂଳକ ଉତ୍ତେଜନା ଜାତହୁଏ ।

(୩) ବର୍ଦ୍ଧିଷ୍ଣୁ ବାଳକ ବାଳିକାଙ୍କର, ବିଶେଷତଃ ବାଳିକାଙ୍କର ବୟଃପ୍ରାପ୍ତ ସମ୍ବନ୍ଧର ଶରୀରଗତ ପରିବର୍ତ୍ତନ ।

(୪) କୁଷ୍ଠ ରୋଗୀର ହୃଆଁ ଅବସ୍ଥା ବେଳେ ତ ସଙ୍ଗେ ପିଲାମାନେ ରହିଥାଏ ହେବା ।

Fig. No. 18.




CHART SHOWING PERCENTAGE OF CASES INFECTED AT THE AGES GIVEN. NOTE THAT OVER 80% OF THE CASES DEVELOP BEFORE THE AGE OF 35 YEARS.

କୁଷ୍ଠରୋଗୀ ପରିବାରରେ ଥିବା ବାଳକ ବାଳିକାଙ୍କ ସମ୍ବନ୍ଧେ ବହୁ ଗବେଷଣାରେ ଦେଖା ଯାଇଛି, ସେମାନେ ଆକ୍ରମଣର ଯେତେ ଅଧୀନ ହୁଅନ୍ତି, କୁଷ୍ଠ ରୋଗ ଛୁଇଁବାର ସେତେ ସମ୍ଭାବନା ଅଛି । ଆମେରିକା ନିକଟ ଫିଲିପାଇନ୍ ଦ୍ୱୀପପୁଞ୍ଜରେ କ୍ୟୁଲିଅନ କୁଷ୍ଠ ବସତିର ଅଳ୍ପ ଦିନ ତଳର ହିସାବରୁ ଜଣାଯାଏ, ଏକବର୍ଷ ବୟସର ପିଲାଙ୍କୁ ସେମାନଙ୍କ ବ୍ୟାଧିଗ୍ରସ୍ତ ପିତାମାତାଙ୍କ ଠାରୁ ଅଲଗା ରଖିବାରୁ ଶତକରା ୫୨ ବାଳକ ମାତ୍ର କୁଷ୍ଠ ରୋଗୀ ହେଲେ । କିନ୍ତୁ ଯେଉଁ ପିଲାମାନେ ପାଞ୍ଚ ବର୍ଷ ବୟସ ପର୍ଯ୍ୟନ୍ତ ରୋଗୀ ପିତାମାତାଙ୍କ ସହିତ ବାସ କଲେ, ସେମାନଙ୍କ ମଧ୍ୟରୁ ଶତକରା ୬୨୫ ଜଣଙ୍କୁ କୁଷ୍ଠରୋଗ ଆକ୍ରମଣ କଲା ।

୧୮ ନମ୍ବର ମାନଚିତ୍ରରେ (ଭାରତୀୟ କମିଶନଙ୍କ ହିସାବରୁ) ଭିନ୍ନ ଭିନ୍ନ ବୟସର ରୋଗୀଙ୍କ ସଂଖ୍ୟା ଦିଆ ଯାଇଅଛି । ସେଥିରୁ ଜଣା ଯାଏ ଯେ, ଶତକରା ୮୦ ଭାଗ ରୋଗୀଙ୍କ ରୋଗ ୩୫ ବର୍ଷରୁ ଊଣା ବୟସରେ ବଢିଥାଏ ।

— ୧୦ —

## କୁଷ୍ଠ କିପରି ପ୍ରସାର ହୁଏ ଏବଂ ଲୋକଙ୍କୁ ସ୍ପର୍ଶ କରେ

କୁଷ୍ଠରୋଗୀ ସଙ୍ଗେ କେବଳ ମିଳାମିଶା କଲେ, ରୋଗ ଜଣକ ଠାରୁ ଅନ୍ୟ ଜଣକ ଠାକୁ ପ୍ରସାରିତ ହୁଏ । ଯାହାର ଜୀବନୀ ଶକ୍ତି ତଳଲିଖିତ କାରଣରୁ କ୍ଷୀଣ ହୋଇଥାଏ, କୁଷ୍ଠ ଜୀବାଣୁ ତାହାର ଶରୀର ପେଶୀରେ ହଠାତ୍ ବୃଦ୍ଧିପାଏ ।

(୧) ମଇଳା, ଅସ୍ୱାସ୍ଥ୍ୟକର ଚର୍ମ ଓ ଚର୍ମ ରୋଗରୁ;

(୨) ସାଧାରଣ ରୋଗ, ଯଥା ଉପଦଂଶ, ଆଙ୍କୁଡ଼ି କୀଟ ରୋଗ, ମାଲଜ୍ୱର ଇତ୍ୟାଦି କାରଣରୁ;

Fig. No. 19.


THE ENEMIES OF LEPROSY.
FREEDOM FROM OTHER DISEASES
BOWELS-WELL REGULATED
EXERCISE-ABUNDANT
HABITS-REGULAR
DIET-FRESH, NOURISHING,
Not Excessive.
COUNT THEM ON YOUR FIVE FINGERS.

(ଗ) ମନ୍ଦ ଖାଦ୍ୟ, ଅଳ୍ପ ଖାଦ୍ୟ ଓ ଉପବାସରୁ ।

ଏକସ୍ଥାନରେ ବହୁ ଲୋକଙ୍କ ଘଞ୍ଚିବାସ, ଅପରିଷ୍କୃତ ବସତି ଏବଂ କୁଷ୍ଠମନ୍ଦାନ ଭାବରେ ସାମାଜିକ ମିଳାମିଶା ଯୋଗେ ଏ ରୋଗ ଲୋକଙ୍କୁ ସହଜରେ ଆକ୍ରମଣ କରେ । ଯାହାଠାରେ ରୋଗ ଥାଏ, ତା ସହିତ ଦୀର୍ଘ ସମୟ ବାସ କରିବା, ତାର ଶେଯ ଓ ଲୁଗା-ପଟା ବ୍ୟବହାର କରିବା ଓ ତା'ସଙ୍ଗେ ଶୋଇବା ଦ୍ୱାରା ସାଧାରଣତଃ କୁଷ୍ଠ ପ୍ରସରିଥାଏ । ଗ୍ରୀଷ୍ମ ପ୍ରଧାନ ଦେଶରେ ଅର୍ଦ୍ଧ ଲଙ୍ଗଳା ଦେହରେ ଏହା ପ୍ରତ୍ୟକ୍ଷ ଭାବରେ ସଂକ୍ରମିତ ହୁଏ । ବୟସ୍କ ଲୋକଙ୍କ ଅପେକ୍ଷା ବାଳକ ଓ ଯୁବକଙ୍କୁ ବେଶୀ ପରିମାଣରେ ରୋଗ ଧରେ; କାରଣ ସେମାନଙ୍କ ଚର୍ମ କୋମଳ ଓ ଜୀବନରେ ଖୁବ ବଢି ଚାଲିଥାଏ । ରୋଗ ଛୁଇଁ ଥିବା ପିତା ମାତା, ବନ୍ଧୁ, ବାନ୍ଧବ, ସାଙ୍ଗ ସାଥି ଓ ଚାକର-ମାନେ ପିଲାଙ୍କୁ ଧରାଧରି ଓ ଗେହ୍ଲା ଆଦର କରିବା, ସେମାନଙ୍କ ସଙ୍ଗେ ଶୁଆ ବସା କରିବା ଦ୍ୱାରା ସେମାନଙ୍କୁ ରୋଗଗ୍ରସ୍ତ କରାନ୍ତି ।

ନିଜ ଶରୀରର ନିର୍ମଳତା, ମୁକ୍ତ ପବନରେ କାର୍ଯ୍ୟ କରିବା ଅଭ୍ୟାସ, ପୁଷ୍ଟିକର ଖାଦ୍ୟ, ଚୁଗଣ୍ଡକାରକ ରୋଗରୁ ମୁକ୍ତ ଏବଂ ମାଦକ ଦ୍ରବ୍ୟ ବର୍ଜନ ଦ୍ୱାରା କୁଷ୍ଠରୋଗ ହେଉଁବାରେ ବାଧା ପଡ଼େ ।

୧୯ ନମ୍ବର ଚିତ୍ର—କୁଷ୍ଠରୋଗର ଶତ୍ରୁ ।

— ୧୧ —

## କୁଷ୍ଠରୋଗର ଲକ୍ଷଣ କଅଣ ?

କୁଷ୍ଠର ଲକ୍ଷଣ —

(୧) ଦେହର ଯେତେ ସ୍ଥାନରେ ବା ଯେଉଁଠାରେ ଗୋଲଛଉ ବା ଦାଗ ଥାଏ, ସେଠାର ଚର୍ମ ତା' ଚାରିପାଖର ଚର୍ମର

ବର୍ଣ୍ଣଠାରୁ ମଳିନ ହୋଇ । ସେହି ଚକ୍କା ଛିଡ଼ ଉପରେ ଚେତନା ଶୂନ୍ୟ ବୋଧହୁଏ; ବାଧା ଟଣା ବା ପିମ୍ପୁଡ଼ି କାମୁଡା ପରି ଜଣାଯାଏ । (କେବଳ ମଳିଆ ଛିଡ଼ ଦେଖି କୁଷ୍ଠ ରୋଗ ବୋଲି ଭାବ ନାହିଁ । )

(୨) ଚର୍ମର ଯେ ସ୍ଥାନ ସହିତ ଯୁକ୍ତ ହୋଇଥିବା ସ୍ନାୟୁ ମୋଟା ଦିଶିପରେ, ତାକୁ ଠେଲିଲେ ବାଧା ଟଣା ହୁଏ, ପୁଣି ତାକୁ ଚିପିଲେ କଷ୍ଟ ସ୍ପଷ୍ଟ ଜଣା ପଡ଼େ । କହୁଣୀ ଭିତର ପଖା ତଳର ସ୍ନାୟୁ ଗୁଡ଼ିକହିଁ ଅଧିକାଂଶ ବହଳ ହୁଏ; ଆଣ୍ଠୁର ବାହାର ପଖାତଳେ ସ୍ନାୟୁ ଓ କାନ ପଛରେ ବେକ ପର୍ଯ୍ୟନ୍ତ ଯାଇଥିବା ସ୍ନାୟୁଟି ମଧ୍ୟ ମୋଟା ହୁଏ । କେତେବେଳେ ଏହା ମଧ୍ୟ ଘଟିଥାଏ ଯେ, ଛିଡ଼ ସ୍ଥାନରେ ଲୋମ ରହେ ନାହିଁ କି ଝାଳ ବହେ ନାହିଁ ।

(୩) ଅଧାଅଧି ହୋଇଥିବା ରୋଗର ସଂକ୍ରାମକ ଅବସ୍ଥାରେ ପ୍ରଥମ ଲକ୍ଷଣ ଗୁଡ଼ିକ ବଢ଼ିଥାଏ । (ମନେ ରଖିବାକୁ ହେବ, କୌଣସି କୌଣସି ସମୟରେ ରୋଗ ବୃଦ୍ଧି ହୁଏନାହିଁ—ଆଦ୍ୟ ଅବସ୍ଥାର ରୋଗହିଁ ରହିଥାଏ । ) ମୁହଁରେ, ହାତରେ ଓ ଅନ୍ୟ ସ୍ଥାନରେ ଗଣ୍ଠିଆ ଫୁଲ ଦେଖାଦିଏ । ଅଧିକାଂଶ ସମୟରେ ନାସା ଓ କର୍ଣ୍ଣରେ ଫୁଲ ହୁଏ । ମୁହଁ ଉପରେ ଯେପରି, ଦେହର ସବୁ ସ୍ଥାନରେ ସେପରି ବହଳିଆ, ଶୀର୍ଣ୍ଣ ଘାଆ ପୂର୍ଣ୍ଣ ହୁଏ । ନାସିକାରୁ ଅନବରତ ପୂଜ ବହାରେ । ଏହା ଅତଶୟ ସଂକ୍ରାମକ । ଗଣ୍ଠି ଗଣ୍ଠିଆ ଫୁଲ ଫାଟିଯାଇ କୁତ୍ସିତ ଘାଆରେ ପରିଣତ ହୁଏ । ସେଥିରୁ ଅସଂଖ୍ୟ ଜୀବାଣୁ ବାହାରନ୍ତି ।

(୪) ଉପରୋକ୍ତ ଶ୍ରେଣୀର ରୋଗରେ ଚର୍ମ କ୍ରମେ କ୍ରମେ ବହଳ ହୋଇଯାଏ । ରୋଗୀର ବନ୍ଧୁ ବାନ୍ଧବ ଏହା ଲକ୍ଷ୍ୟ କରିପାରନ୍ତି

ନାହିଁ । ପାଖ ଲୋକେ ଜାଣିବା ବହୁ ଆଗରୁ ଜଣେ ରୋଗୀମାନେ ଏ ପରିବର୍ତ୍ତନ ଅଧିକାଂଶ ସମୟରେ ବୁଝିଥା'ନ୍ତି ।

—୧୨—

## ପଲ୍ଲି ଗ୍ରାମରେ କୁଷ୍ଠ ରୋଗୀର ଚିକିତ୍ସା

ଇତର ଲୋକେ କରିବା ଭଳି କୁଷ୍ଠରୋଗର କୌଣସି ସହଜ ଚିକିତ୍ସା ନାହିଁ । ରୋଗ ସମ୍ବନ୍ଧେ ବିଶେଷ ଜ୍ଞାନ ଲାଭ କରିଥିବା ଡାକ୍ତରମାନେହିଁ ଚିକିତ୍ସା କରିବା ଦରକାର । ସୁଦକ୍ଷ ଡାକ୍ତରମାନେ ସୁଦ୍ଧା ଚିକିତ୍ସାକରି କେତେ ଜାଗାରେ ସଫଳ ହୋଇ ନାହାନ୍ତି । ଏହା ସ୍ପଷ୍ଟ ଭାବରେ ସ୍ମରଣ ରଖିବ—

(୧) କୁଷ୍ଠର କୌଣସି ଅବଶ୍ୟମ୍ଭାବୀ ଆରୋଗ୍ୟ ବିଧାନ ନାହିଁ ।

(୨) ଯେଉଁ ଚିକିତ୍ସା ଦିଆଯିବ, ରୋଗର ପ୍ରକୃତି ଓ ଚିକିତ୍ସାରେ ଶିକ୍ଷା ପାଇଥିବା ଡାକ୍ତରଙ୍କ ଦ୍ୱାରାହିଁ ଦିଆଯିବାକୁ ହେବ । ଗ୍ରାମର ସାଧାରଣ ନିର୍ମଳତା ରହିଲେ ଅନ୍ୟ ପ୍ରକାରେ ତାହା ଏ ଚିକିତ୍ସାବେଳେ ସାହାଯ୍ୟ କରେ । ଏ ଜିଲ୍ଲାର ଛୋଟ ବଡ଼ ସବୁ ଚିକିତ୍ସାଳୟରେ କୁଷ୍ଠ ଚିକିତ୍ସା କରାଯାଏ । ଦାତବ୍ୟ ଚିକିତ୍ସାଳୟ ବା ମିଶନ୍ ହାସପାତାଲ୍ ମାନଙ୍କରେ ସୁଦ୍ଧା କୁଷ୍ଠ ଚିକିତ୍ସା ମିଳେ । ରୋଗୀମାନେ ଯେ କୌଣସି ଉପରୋକ୍ତ ଚିକିତ୍ସାଗାରକୁ ଯାଇ ଚିକିତ୍ସା ପାଇବା ଆବଶ୍ୟକ । ସବୁ ଚିହ୍ନ ଲୋପ ପାଇଲା ପର୍ଯ୍ୟନ୍ତ ବହୁ ସମୟ ଧରି ଚିକିତ୍ସା କରାଇ ନେବାକୁ ହେବ ।

୨୦ ନମ୍ବର ଚିତ୍ର—ଗଞ୍ଜାମ ଜିଲ୍ଲା ବ୍ରହ୍ମପୁର ହାସପାତାଲର କୁଷ୍ଠ ଚିକିତ୍ସା କେନ୍ଦ୍ର । ସେଥିରେ ଡାକ୍ତରଙ୍କ ଦ୍ୱାରା ଚିକିତ୍ସିତ ହେଉଥିବା ରୋଗୀଙ୍କୁ ଦେଖିପାରିବ ।

Fig. No. 20.

# କୁଷ୍ଠ ଚିକିତ୍ସାଳୟ

ବ୍ରହ୍ମପୁର (ଗଞ୍ଜାମ)



ବାମରୁ ଦକ୍ଷିଣକୁ:—

୧. କେତେକ କୁଷ୍ଠରୋଗୀ

୨. ମିଷ୍ଟର ଭି. ସୂର୍ଯ୍ୟନାରାୟଣ

୩. ରାଓ ବାହାଦୁର ଏମ୍. ଭି. ଅପ୍ପାରାଓ,
ଗଞ୍ଜାମ ଜିଲ୍ଲା କୁଷ୍ଠ ନିବାରଣୀ ସମିତିର ଯୁଗ୍ମ ଅନାହାସ୍ତ ସମ୍ପାଦକ ।

୪. ଚାଳକ

Fig. No. 22.


DIET
IN PREVENTION & TREATMENT OF
LEPROSY
IN THE PUNJAB WHERE THEY EAT THIS DIET THERE IS PRACTICALLY NO LEPROSY.
WHOLE
/HEAT BREAD
MILK
1 TO 2 SEERS A DAY FOR THE ADULT.
BUTTER IS BETTER THAN GHEE.
VEGETABLES
STEAMING OF VEGETABLES PRESERVES ALL THE FOOD IN THEM
DALL
FOOD MUST BE FRESHLY PREPARED — NO STALE OR PRESERVED FOOD MAY BE EATEN.
FOOD MUST NOT BE RICH OR OVER-COOKED.
DO NOT OVER-EAT — HAVE REGULAR MEALS.
EGGS ARE GOOD FOR THOSE WHO CAN TAKE THEM. MUCH MEAT OR FISH IS BAD IN A HOT CLIMATE.

୨୧ ନମ୍ବର ମାନଚିତ୍ର—ଯେଉଁ ସବୁ ସ୍ଥାନରେ କୁଷ୍ଠ ଚିକିତ୍ସା କେନ୍ଦ୍ର ଅଛି—ଜିଲ୍ଲାର ଭିନ୍ନ ଭିନ୍ନ ତାଲୁକାର ହଜାର ଲୋକରେ କୁଷ୍ଠ ରୋଗୀ ସଂଖ୍ୟା ଦିଆଯାଇଛି ।

—୧୩—

# ଚିକିତ୍ସାବେଳେ ରୋଗୀର ପଥ୍ୟ

ଇଞ୍ଜେକସନ୍ ଦେଲେ ଚିକିତ୍ସାର ଆରମ୍ଭ ମାତ୍ର ହୁଏ । ଗରିବ ରୋଗୀକି ମଧ୍ୟ ଇଞ୍ଜେକସନ୍ ଦିଆଯାଏ । କିନ୍ତୁ ଶସ୍ତା ବୋଲି ବହୁତ ଭାତ ଖାଇ ସେ ପେଟ ପୂରାଏ, କିମ୍ବା ଖାଇବା ପାଇଁ ଯଥେଷ୍ଟ ଖାଦ୍ୟ ପାଏ ନାହିଁ । ସୁତରାଂ ତାର ରୋଗ ଭଲ ହୁଏନାହିଁ । ରୋଗ ସଙ୍ଗେ ଲଢ଼ିବାପାଇଁ ଉତ୍ତମ ରୂପେ ସମତୁଲ ଖାଦ୍ୟ ଖାଇବାକୁ ହେବ । ଉଚିତ ପରିମାଣରେ ବାଲି ମିଶିଲେ ସିମେଣ୍ଟ କଠିନ ହୁଏ । ସେହିପରି ରୋଗର ଆକ୍ରମଣକୁ ଏଡ଼ି ବଳ ରକ୍ଷା କରିବାକୁ ହେଲେ ବିଭିନ୍ନ ପ୍ରକାର ଖାଦ୍ୟ ଖାଇବା ଦରକାର । ଚିକିତ୍ସା ବେଳର ରୋଗୀମାନଙ୍କ ପଥ୍ୟରେ ଏହି ତଳ ଲିଖିତ ପଦାର୍ଥର ଅଭାବ ଦେଖାଯାଏ—

(କ) ଶରୀର ଗଢ଼ିବା ଖାଦ୍ୟ—ଏହାର ନାମ ଶ୍ୱେତସାର । ଏହା ଡ଼ାଲି, ଦୁଧ, ଡିମ୍ବ, ମାଂସ ଓ ମାଛରେ ମୁଖ୍ୟ ଭାବରେ ଥାଏ ।

(ଖ) ଯଥେଷ୍ଟ ପରିମାଣରେ ବସା ଏବଂ

(ଗ) ଯଥେଷ୍ଟ ସଜ ବା ସବୁଜ ପରିବା ।

୨୨ ନମ୍ବର ଚିତ୍ର—କୁଷ୍ଠ ଆକ୍ରମଣରୁ ରକ୍ଷାକରିବା ପାଇଁ ଓ ଚିକିତ୍ସାପାଇଁ ଲୋଡ଼ା ନିହବା ଖାଦ୍ୟ ।

— ୧୪ —

## ପଲ୍ଲୀଗ୍ରାମର ସୁସ୍ଥ ଲୋକଙ୍କୁ ରକ୍ଷା କରିବା ଉପାୟ

ଗ୍ରାମରେ ବାସ କରିବା ସୁସ୍ଥ ଲୋକଙ୍କୁ ଏ ରୋଗ ଯେପରି ଆକ୍ରମଣ ନକରେ, ସେଥିପାଇଁ ନିମ୍ନଲିଖିତ ଉପାୟ ଗ୍ରହଣକରିବାକୁ ହେବ।

(୧) କୁଷ୍ଠରୋଗୀ ଅଲଗା ଗମ୍ଭିରାରେ ଶୋଇବ । ଅଲଗା ଘର ନଥିଲେ ଗୋଟିଏ ତୋଳିବାକୁ ହେବ। ତୋଳିବାପାଇଁ ପାଖ ପଡ଼ୋଶୀ ଲୋକେ ସାହାଯ୍ୟ କରିବା ଦରକାର । ତାହାହେଲେ ସେ ପରିବାରକୁ ଅଧିକ ଖରଚ ଲାଗିବ ନାହିଁ ।

(୨) ସେ ଖାଇବା କଂସା ଗିନା ସ୍ୱତନ୍ତ୍ର ରଖିବ । ସେ ସବୁ ସେ ନିଜେ ମାଜିବ। ତା ନିକଟକୁ ପାଣି ଆଣିଦେଲେ ସେ ଗାଧୋଇବ; ତଦ୍ୱାରା ସେ କୂଅ ବା ପୋଖରୀକି ଯିବନାହିଁ ।

(୩) ଘରେ ଥିବା ଅନ୍ୟମାନଙ୍କର କନ୍ଥା ଶେଜ, ପାଛୋଡ଼ି, କମ୍ବଳ, ଖଦୀ ଲୁଗା ଯେତେ ଦରକାର ହେଲେ ସୁଦ୍ଧା ସେ ବ୍ୟବହାର କରିବା ଉଚିତ ନୁହେ ।

(୪) ଘରର ପିଲାଙ୍କୁ ସେ କାଖେଇବ ନାହିଁ ଯେତେ ଦୂର ପାରେ ସେମାନଙ୍କୁ ଦୂରରେ ରଖିବ । କୌଣସି ଅବସ୍ଥାରେ ପିଲାମାନେ ତା' ଘରେ ପଶିବେ ନାହିଁ।

(୫) ମୁକ୍ତ ପବନରେ କାମ କରିବାପାଇଁ ତାକୁ ପ୍ରବର୍ତ୍ତାଇବାକୁ ହେବ। ସେ କୃଷି କଲେ କ୍ଷତି ନାହିଁ । କିନ୍ତୁ ଧାନ ଚୁଆ ଓ ମଢ଼ା, ପରିବା ତୋଳିବା ପ୍ରଭୃତି ଅନ୍ୟକାମ ଅନ୍ୟମାନେ କରିବେ । ଲୁଗା ସିଲେଇ କାମ, ଲୁଗାଧୁଆ କାମ, ମିଠାଇ ତିଆରି, ଚୁଡ଼ିବନ୍ଧାଦି ସେ କରିବ ନାହିଁ। କାରଣ ଏହି ସବୁ କାମ ଦ୍ୱାରା ସେ ଲୋକଙ୍କର ପ୍ରତ୍ୟକ୍ଷ ସଂସର୍ଗରେ ଆସେ, ସେମାନଙ୍କୁ ସ୍ପର୍ଶକରେ ବା ସ୍ପର୍ଶକରି ଜିନିଷ ଦିଏ।

(୬) ରୋଗୀ ସ୍ତ୍ରୀ ହୋଇଥିଲେ ଉପର ଲିଖିତ ସବୁ ନିୟମ ପାଳିବ । ତାର ଦୁଧଖିଆ ପିଲା ଥିଲେ ତାକୁ ଦୁଧ ଦେବନାହିଁ କି ଧରାଧରି କରିବ ନାହିଁ । ଶିଶୁର ହିତପାଇଁ ଏହା ମାନିବାକୁ ହେବ । ଅନ୍ୟମାନେ ସେ ପିଲାର ଲାଳନ ପାଳନ କରିବେ । ଏପରି ନ କଲେ ପିଲାକୁ ରୋଗ ଆକ୍ରମଣ କରିବାର ଯଥେଷ୍ଟ ଭୟ ସବୁବେଳେ ଅଛି ।

(୭) ସ୍ୱାମୀ ବା ସ୍ତ୍ରୀର ରୋଗ ସଂକ୍ରାମକ ଅବସ୍ଥାରେ ଥିଲେ ସେମାନେ ଅଲଗା ରହି ସଂଯମ ରକ୍ଷାପାଇଁ ସର୍ବ ପ୍ରକାରେ ଚେଷ୍ଟା କରିବେ । ସ୍ତ୍ରୀରୋଗୀ ଠାରୁ ପୁରୁଷକୁ ହେଇବା ଆପଦ ଅଛି, ତଥାପି ହେଇବା ଅତିଶୟ ସମ୍ଭବ ନୁହେ । କିନ୍ତୁ ସ୍ତ୍ରୀ ଗର୍ଭଧାରଣ କଲେ ତା'ର ଅତି କଷ୍ଟ ହେବ ଏବଂ ସାଧାରଣତଃ ସେହି କାରଣରୁ ରୋଗ ଅଧିକ ହେବ । ପୁଣି ପିତା ବା ମାତା ରୋଗୀ ହୋଇଥିଲେ ଶିଶୁ ଜନ୍ମହେଲା ମାତ୍ରେ ତା'ଠାକୁ ରୋଗ ହେଇବାର ଭୟଙ୍କର ଆପଦ ଅଛି ।

(୮) କୌଣସି ପିଲାଙ୍କରେ ହେଇବା ଅବସ୍ଥାରେ ରୋଗଥିଲେ ସେ ସ୍କୁଲକୁ ଯିବା ଉଚିତ ନୁହେ । ତା ର ଜୀବନଯାକ ରୋଗ ହେବା ପାଇଁ ବାକି ରହିଛି, ତେଣୁ କୌଣସି ଚିକିତ୍ସା କେନ୍ଦ୍ରକୁ ନେଇ ତାକୁ ଆରୋଗ୍ୟ କରିବା ଉଚିତ । ସଙ୍ଗେ ସଙ୍ଗେ ସେଠାରେ ସେ ପାଠ ମଧ୍ୟ ପଢ଼ିପାରିବ । ସେପରି ଅବସ୍ଥା ନଥିଲେ ତାର କୌଣସି ବନ୍ଧୁ ବାନ୍ଧବ ସେଠାକୁ ଯାଇ, ତା ସଙ୍ଗେ ନ ମିଶି ଦିନକୁ ଘଣ୍ଟାଏ ହିସାବରେ ପଢ଼ାଇବା ଦରକାର ।

— ୧୫ —

## ସୁସ୍ଥଲୋକ କିପରି କୁଷ୍ଠରୋଗ ନିବାରଣ କରିପାରେ

ସୁସ୍ଥ ଲୋକ ଏ ତଳଲିଖିତ ନିୟମ ସବୁ ପାଳନ କଲେ ତାଠାରେ କୁଷ୍ଠରୋଗ ପ୍ରବେଶ ହୋଇପାରିବ ନାହିଁ ।

(୧) ଅନ୍ୟ ପାଠରେ ଦିଆଯାଇଥିବା ଜୀବନର ନିୟମାବଳୀ ସେ ପାଳନ କରିବ । ତାର ଦେହ କୁଷ୍ଠ ଜୀବାଣୁ ନିମନ୍ତେ ଅନୁକୂଳ ନହେଲେ ରୋଗ ବଢିପାରିବ ନାହିଁ; ଏକଥା ସ୍ମରଣ ରଖିବ ।

(୨) ସଂକ୍ରାମକ କୁଷ୍ଠରୋଗୀ ସଙ୍ଗେ ମିଶିବ ନାହିଁ; ଛୁଇଁ ଦେଲେ ବିଳମ୍ବ ନକରି ପଚନ ନିବାରକ ସାବୁନ ଦ୍ୱାରା ଦୁଇ ହାତ ଭଲକରି ଧୋଇବ ।

(୩) ସକଳ ପ୍ରକାର ଚେଷ୍ଟାକରି ସଂକ୍ରାମକ ରୋଗୀମାନଙ୍କୁ ଅଲଗା ଲୁଗାପଟା, କଂସା ବାସନ ସହ ସେମାନଙ୍କ ନିଜ ଘରେ ସ୍ୱତନ୍ତ୍ର କୋଠରୀରେ ରଖାଇବ । ଏ ସବୁ କରିବାପାଇଁ ଉପାୟ ନଥିଲେ ରୋଗୀମାନେ କୁଷ୍ଠାଶ୍ରମରେ ପ୍ରବେଶ କରନ୍ତୁ ।

୨୩ ନମ୍ବର ଚିତ୍ର—କୁଷ୍ଠ ରୋଗୀକୁ ଘରେ ଅଲଗାକରି ରଖା ଯାଇଛି—ଯେପରି ସେ ଘରର ନିରୋଗୀ ଲୋକେ ସେ ରୋଗରେ ନ ପଡ଼ନ୍ତି ।

—୧୨—

## କୁଷ୍ଠରୋଗୀଙ୍କ ବିବାହ ଓ ଜାତହେବା ପିଲା

କୁଷ୍ଠ ବଂଶଗତ ରୋଗ ନହେଲେ ସୁଦ୍ଧା ପିତା ମାତା, ବନ୍ଧୁ ବାନ୍ଧବ, ଖୁଡ଼ି ବା ଚାକର ରୋଗୀ ହୋଇ ପିଲମାନଙ୍କର ଶୁଶ୍ରୂଷା କଲେ କିମ୍ବା ସେମାନଙ୍କୁ ଧରିବୁଲିଲେ ରୋଗ ହୋଇଥାଏ ।

ତଥାପି ରୋଗିଣୀ ସ୍ତ୍ରୀର ପିଲା ଜନ୍ମହେଲେ ତାକୁ ଅତି ଶୀଘ୍ର, ମା'ଠାରୁ ଅଲଗା କରି ରଖିବା । ମା'ମାନଙ୍କର ଅତି ସଂକ୍ରାମକ ଅବସ୍ଥାରେ, ଯେଉଁ ପିଲାମାନେ ସେମାନଙ୍କ ସହିତ ରହନ୍ତି, ସେଥି ମଧ୍ୟରୁ ଅର୍ଦ୍ଧରୁ ଅଧିକ ପିଲା କୁଷ୍ଠ ରୋଗରେ ପଡ଼ିବା ଦେଖାଯାଏ । ଗର୍ଭଧାରଣ

Fig. No. 23.

କୁଷ୍ଠ ରୋଗୀକୁ ଗୋଟିଏ ପୃଥକ କୋଠରୀରେ ଅଲଗା କରି ରଖାଯାଇଛି ।



Fig. No. 24

ଜନ୍ମ ହେଲାକ୍ଷଣି ସଂକ୍ରାମକ କୁଷ୍ଠୀ ମାଆଠାରୁ ପିଲାକୁ ଅଲଗା କରିବ । ଯେତେଦିନ ଶରୀରରୁ ରୋଗର ବୀଜ ଯାଇ ନାହିଁ ସେତେଦିନ ପର୍ଯ୍ୟନ୍ତ ମା ପିଲାକୁ ଛୁଇଁବ ନାହିଁ ।



Fig. No. 25.

ସଂକ୍ରାମକ କୁଷ୍ଠରୋଗୀ ନିଜ ଘରକୁ ପିଲାଙ୍କୁ ପଶିବାକୁ ଦେବ ନାହିଁ ।



ସାଧାରଣତଃ କୁଷ୍ଠରୋଗ ବଢ଼ିବା ସଙ୍ଗେ ହୁଏ; ସୁତରାଂ ସାମାନ୍ୟ ମାତ୍ର କୁଷ୍ଠ ଚିହ୍ନ ଥିଲେ କେହି ବିବାହ କରିବ ନାହିଁ ।

୨୪ ନମ୍ବର ଚିତ୍ର—ମାତା'ର ରୋଗ ସଂକ୍ରାମକ ଅବସ୍ଥାରେ ଥିଲା ପର୍ଯ୍ୟନ୍ତ ଜାତ ହୋଇଥିବା ପିଲାକୁ ଅଲଗା ରଖାଯାଇଛି । ମାଆ ତାକୁ ଛୁଏଁ ନାହିଁ ।

୨୫ ନମ୍ବର ଚିତ୍ର—କୁଷ୍ଠ ରୋଗୀ ପିତା ତାର ପିଲାମାନଙ୍କ, ତା ଗମ୍ଭିରରେ ପ୍ରବେଶ କରୁଏ ନାହିଁ ।

—୧୭—

ଆଦ୍ୟ ଅବସ୍ଥାରେ କୁଷ୍ଠ ସର୍ବଦା ପ୍ରାୟ ଆରୋଗ୍ୟ ହୁଏ । ଏବଂ ସମସ୍ତ ଚିହ୍ନରୁ ରୋଗୀ ମୁକ୍ତ ହୁଏ । ଅଧିକାଂଶଙ୍କ ଠାରେ ଆଦ୍ୟ ଅବସ୍ଥା ଅନ୍ତତଃ ୧ ବର୍ଷ ରହେ । ସୁତରାଂ ରୋଗର ନିଦାନ କରି ଚିକିତ୍ସା ପାଇଁ ରୋଗୀର ଯଥେଷ୍ଟ ସମୟ ଥାଏ । ଦେହର ସମସ୍ତ ରୋଗ ଚିହ୍ନ ନଷ୍ଟ ହୋଇଛି ବୋଲି କହି ହେବ ନାହିଁ । ରୋଗୀ ଦୁର୍ବଳ ହୋଇ ପଡ଼ିଲେ ପୁଣି ରୋଗ ଲେଉଟି ଆସେ । ରୋଗୀ ଯଦି ସ୍ୱାସ୍ଥ୍ୟ ରକ୍ଷା କରେ ଏବଂ ବଳିଷ୍ଠ ହୁଏ, ଆଉ କେବେ ହେଲେ ରୋଗ ଦେଖା ଦଏ ନାହିଁ । ଏ ରୋଗକୁ ଅତି ଅଳ୍ପ ସମୟରେ ଭଲ କରିଦେବା ପାଇଁ କୌଣସି କୁହୁକ ଔଷଧ ନାହିଁ । ସମ୍ପୂର୍ଣ୍ଣ ଆରୋଗ୍ୟ ହେବାପାଇଁ ବହୁ ମାସ ଏବଂ ବର୍ଷ ମଧ୍ୟ ଲାଗିପାରେ । ଡାକ୍ତରଙ୍କ, ରୋଗ ଭଲ କରିବା ପାଇଁ ରୋଗୀ ସହାଯ୍ୟ କରିବା ଦରକାର । ତାଙ୍କର ସମସ୍ତ ଉପଦେଶ ଠିକ୍ ଭାବରେ ମାନି ଚଳିବାକୁ ହେବ । ମୂର୍ଖ, ଅଳସୁଆ ଓ ଅବାଧ୍ୟ ରୋଗୀ ଭଲ ହେବାର କୌଣସି ଆଶା ନାହିଁ ।

# ଦ୍ୱିତୀୟ ଅଧ୍ୟାୟ

## ସମାଜର ସେବା କାର୍ଯ୍ୟ

ଦୁଃଖ କଷ୍ଟ ଭୋଗ କରୁଥିବା ମାନବର ସେବା କରି ଧର୍ମ ଜୀବନର ଅତି ବଡ଼ ସଫଳତା ଲାଭ ହୁଏ । ତା'ର ଦୁଃଖ ଦୂର କରିବା ପାଇଁ ଆମ ସମସ୍ତଙ୍କ ଚେଷ୍ଟା କରିବାକୁ ହେବ । ସେବା ଅଟେ ଭାରତର ଜାତୀୟ ଆଦର୍ଶ । ଏହା ପ୍ରଧାନତଃ ତିନି ପ୍ରକାର—ସାମାଜିକ, ଦାନ ଧର୍ମ ମୂଳକ ଓ ଶିକ୍ଷା ବିଷୟକ । ବର୍ତ୍ତମାନର ବିଷୟ ସମାଜ ସେବା । ବର୍ଣ୍ଣ ବା ଧର୍ମ, ଜାତି ବା ଜାତୀୟତା ନିର୍ବିଶେଷରେ ସକଳ ମାନବଙ୍କୁ ଦେବତାଙ୍କ ପ୍ରକୃତ ପ୍ରକାଶ ବୋଲି ଗ୍ରହଣ କରିବାକୁ ହେବ । ସେମାନଙ୍କ ଶାରୀରିକ ଅଭାବ ମୋଚନ ପାଇଁ ସେବା କରିବାକୁ ହେବ । ଯେଉଁମାନେ ନିଃସ୍ୱାର୍ଥପର, ଉଚ୍ଚ ଜୀବନର ଅଧିକାରୀ, ତପଶ୍ଚର୍ଯ୍ୟା ଓ ସାଧନା ବଳରେ ଯେଉଁମାନଙ୍କ ଆତ୍ମାର ଆଧ୍ୟାତ୍ମିକ ପରିଣତି ହୋଇଥାଏ, ସେମାନେ ମାନସିକ ଖାଦ୍ୟ ଯୋଗାଇବେ । ପୁରପଲ୍ଲୀର ଅଭାବରେ ପଡ଼ିଥିବା ଲୋକଙ୍କର ଶୁଶ୍ରୂଷା କରିବା, ସେମାନଙ୍କୁ ଦୁଃଖ ଦୁର୍ବିପାକରୁ ଉଦ୍ଧାର କରିବାହିଁ ସେମାନଙ୍କ ଦୈହିକ ଅଭାବ ମୋଚନ ଅଟେ ।

କୁଷ୍ଠ ଏକ ଭୟଙ୍କର ରୋଗ । ଏହା ଚର୍ମ ଓ ମାଂସ ଖାଇଯାଏ । ଏହା କବଳରେ ପଡ଼ିବା ଲୋକ ଶରୀର ଆତ୍ମାରେ ଭୟାନକ ଦୁଃଖ ଭୋଗ କରେ । ଏଥିରେ ପଡ଼ିବା ଦୁର୍ଭାଗା ଲୋକଙ୍କୁ ଅଜାତୀୟା ପରି ସମସ୍ତେ ଅଲଗା କରନ୍ତି ଏବଂ ତା'ପାଖପଡ଼ିକୁ ଯାଆନ୍ତି ନାହିଁ । ଏହି ଅଭାଗା ରୋଗୀଙ୍କୁ ସାହାଯ୍ୟ କରିବା ହେଉଛି ସମାଜ ସେବାର ଅଙ୍ଗ । କୁଷ୍ଠ ରୋଗୀଙ୍କ ଭିତରୁ ଅଧିକାଂଶ ବାସ କରନ୍ତି ଗ୍ରାମ ଗହଳରେ ।

ସୁତରାଂ ଏ ସମ୍ପର୍କରେ ସମାଜ ସେବକଗଣ ତାଙ୍କ ସେବାକାର୍ଯ୍ୟ ଗ୍ରାମ ଭିତରେ ଆରମ୍ଭ କରିବା ଆବଶ୍ୟକ ।

## ଗ୍ରାମରେ କୁଷ୍ଠରୋଗ ସମ୍ପର୍କରେ ସମାଜ ସେବକଙ୍କ କାର୍ଯ୍ୟ

ଗ୍ରାମ ଅଟେ କୁଷ୍ଠରୋଗର ଘର । ଗ୍ରାମ ଭିତରେ ଏହାର ଧ୍ୱଂସ କରିବାକୁ ହେବ । କେତେ ଗ୍ରାମରେ ଅନେକ ଲୋକଙ୍କର କୁଷ୍ଠରୋଗ ଥାଏ । ରୋଗ ଅତିଶୟ ନବଢ଼ିଲେ କିମ୍ବା ଦେହ ବିକୃତ ନହେଲେ ସେଥିପ୍ରତି ସେମାନେ ଖାତିର କରନ୍ତି ନାହିଁ । ଦେହ ଅତି କଦର୍ଯ୍ୟ ଭାବରେ ବିକୃତ ହୋଇଗଲେ ବନ୍ଧୁ ବାନ୍ଧବଗଣ ଭୟ ପାଇ ସେମାନଙ୍କୁ ତଡ଼ି ଦିଅନ୍ତି । ଏଠାରେହିଁ ସମାଜ ସେବକଙ୍କ କାର୍ଯ୍ୟ ପ୍ରଧାନ ଭାବରେ ଦରକାର ହୁଏ । ଏ ବହିର ପ୍ରଥମ ଅଧ୍ୟାୟର ସମସ୍ତ ପାଠ ସମାଜ ସେବକ ପଢ଼ିବେ । ତାହା ହେଲେ କୁଷ୍ଠ କଅଣ, ତାର ନିବାରଣ ଓ ଚିକିତ୍ସା ଓ ବିନାଶ ପାଇଁ କି କାର୍ଯ୍ୟ କରିବାକୁ ହୁଏ, ତାହା ସେ ଜାଣି ପାରିବେ । ସେ ଗ୍ରାମ ଲୋକଙ୍କ ସହିତ ଖୋଲା ଭାବରେ ମିଳାମିଶା କରିବେ ଏପରି କରିବା ଦ୍ୱାରା ସକଳ ପ୍ରକାର ଜାତିଗତ, ଧର୍ମଗତ, ସାମାଜିକ ଓ ବର୍ଣ୍ଣଗତ ପାର୍ଥକ୍ୟ ଉଭେଇ ଯିବ । ଯେଉଁମାନଙ୍କୁ ପ୍ରବର୍ତ୍ତାଇବାକୁ ହେବ, ସେମାନଙ୍କ ତଦ୍ୱାରା ସେ ଚିହ୍ନି ପାରିବେ ସହାନୁଭୂତି ଦେଖାଇ ପାରିବେ । ଜୋର ଜବରଦସ୍ତି ଭାବ ଦେଖାଇଲେ କାମ ନଷ୍ଟ ହେବ ।

କର୍ମୀଙ୍କୁ ମନେ ରଖିବାକୁ ହେବ ଯେ, ଲେପ୍ରୋମାଟସ୍ ଲୋକଙ୍କର ରୋଗ ସଂକ୍ରାମକ, ଟିଉବରକ୍ୟୁଲଏଡ୍ ଲୋକଙ୍କର ପୁଣି ସଂକ୍ରାମକ ନୁହେ । ଏହା ମଧ୍ୟ ମନେ ରଖିବାକୁ ହେବ ଯେ, ରୋଗୀଙ୍କ ମଧ୍ୟରୁ ସାଧାରଣତଃ ଗୋଟିଏ ଭାଗରୁ

ଏକଲ୍ପଗ ମାତ୍ର ହୁଆଁ ରୋଗ ଓ ଅନ୍ୟ ସବୁ ହୁଆଁ ରୋଗ ନୁହେ । ଯେଉଁ ଲୋକଙ୍କ ଦେହରେ ପରିପୁଷ୍ଟ 'ଜୀବଧାତୁ' ଜୀବାଣୁଥାଏ, କୁଷ୍ଠଜୀବାଣୁ ଆଶ୍ରୟ ନେବା ପାଇଁ ସେଠାରେ ସୁବିଧା ସ୍ଥାନ ପାଏ । ଦେହରୁ ମଳ-ଚମ ବାହାର ଥିଲେ, ବା ସେଠାରେ କ୍ଷତ ହୋଇଥିଲେ ସେହିବାଟେ ବୋଧ ହୁଏ କୁଷ୍ଠ ଜୀବାଣୁ ଭିତରେ ପଶେ । ନିଆଁ ଲାଗିଥିବା ଘରର ଫୁଲିଙ୍ଗ ଉଡ଼ିଲେ ସବୁ ସ୍ଥାନରେ ବିଞ୍ଚି ହୋଇପଡ଼େ । ପାଣିରେ ପଡ଼ିଲେ ତତ୍‌କ୍ଷଣାତ୍ ଲିଭିଯାଏ । ଓଦା ମାଟିରେ ପଡ଼ିଲେ, ତାହା ମଧ୍ୟ ଧୀରେ ଧୀରେ ଲିଭିଯାଏ । ଅନ୍ୟ ଫୁଲିଙ୍ଗ ଶୁଖିଲା ନଡ଼ା ଗଦା ଉପରେ ପଡ଼ି ତାକୁ ପୋଡ଼ିପକାଏ ଠିକ୍ ଏହି ଭଳିରେ କୁଷ୍ଠ ଜୀବାଣୁକୁ କେତେକ କପରି 'ପରିପୁଷ୍ଟ ଜୀବଧାତୁ' ପ୍ରାଣୀଙ୍କ ସୁବିଧାମତେ ମିଳିଯାଏ; କେତେ ବା ମିଳେ ନାହିଁ । ଏହି ସୁବିଧାମତ ପ୍ରାଣୀ ଅଟନ୍ତି—

(୧) ବାଳକ ବାଳିକା

(୨) ଆଙ୍କୁଡ଼ା କୀଟ ବା ମାଲେରିଆ ଜ୍ୱର ପରି ରୋଗ ଦ୍ୱାରା ହୋଇଥିବା ଲୋକ ।

(୩) ଯେଉଁ ଲୋକର ଖାଦ୍ୟ ନିଅଣ୍ଟ ହୁଏ ।

କର୍ମୀ ଜାଣିବା ଉଚିତ ଯେ (କ) କେତେ କୁଷ୍ଠ ରୋଗୀ ଅନ୍ୟ ଲୋକଙ୍କ ଠାରୁ ବିପଦ ଆଣନ୍ତି, କେତେ ଆଣନ୍ତି ନାହିଁ (ଖ) ପିଲାମାନେ, ଦୁର୍ବଳ ଲୋକେ, ନିଅଣ୍ଟିଆ ଖାଦ୍ୟ ଖାଉଥିବା ଲୋକେ ବିପଦଜନକ ରୋଗୀଙ୍କ ଠାରୁ ରୋଗ ଟାଣି ନିଅନ୍ତି ।

କୁଷ୍ଠ ହୋଇଛି ବୋଲି କପରି ଜାଣିବ, କେଉଁଟି ସଂକ୍ରାମକ ଓ କେଉଁଟି ନୁହେ, ଏ ସବୁ କଥା ଗ୍ରାମବାସୀଙ୍କୁ କର୍ମୀ ଜଣାଇଦେବେ । ହୁଆଁ ଓ ଅହୁଆଁ ଅବସ୍ଥାରେ ସନ୍ଧି ସ୍ଥଳରେ ପହଞ୍ଚିଥିବା ରୋଗ ଅବଶ୍ୟ ଦେଖି ଚିହ୍ନିପାରିବ ନାହିଁ । ତାକୁ ଚିହ୍ନିବା ପାଇଁ ସୂକ୍ଷ୍ମ ବୁଦ୍ଧି ଓ

ବିଜ୍ଞାନ ମନ୍ଦିରର ବିଶେଷ ଗବେଷଣା ଦରକାର । କିନ୍ତୁ ସାଧାରଣତଃ ଏକଥା କୁହାଯାଇପାରେ ଯେ, ଆରମ୍ଭ ହେବା ମାତ୍ରେ ରୋଗ ସଂକ୍ରାମକ ନୁହେଁ, ମଝି ଅବସ୍ଥାରେ ରୋଗ ସଂକ୍ରାମକ ଅଟେ । ଗ୍ରାମ ଭିତରେ କାହାର କୁଷ୍ଠ ରୋଗ ହୋଇଛି, କାହାର ରୋଗ ସଂକ୍ରାମକ ଜାଣିବା ପାଇଁ ସେ ଖୁବ ସାବଧାନ ହୋଇ ଅନୁସନ୍ଧାନ କରିବେ । ଲୋକଙ୍କୁ ଜଣାଇବାକୁ ହେବ ଯେ, ଏ ଅନୁସନ୍ଧାନ ସେମାନଙ୍କ ଉପକାର ପାଇଁ ମାତ୍ର କରାଯାଉଅଛି । ତାହା ନ କଲେ ଲୋକେ ରୋଗ ଲୁଚାଇ ରଖିବେ । ପ୍ରଥମେ ଗାଁ ମଣ୍ଡଳୀ ଲୋକଙ୍କର ସେ ବିଶ୍ୱାସଭାଜନ ହେବା ଦରକାର । ସେମାନଙ୍କ ସହଯୋଗିତା ଲାଭ କରିବାକୁ ହେବ । ସେମାନଙ୍କ ସାହାଯ୍ୟରେ ଘର-ଚିଠି ତିଆରି କରିବେ । ପ୍ରତିଘର ପାଇଁ ଗୋଟିଏ ଚିଠି ରହିବ । ଚିଠିରେ ଭିନ୍ନ ଭିନ୍ନ ଘରେ ଘରର ଲୋକ ସଂଖ୍ୟା, ଲିଙ୍ଗ, ଅନୁମାନିକ ବୟସ, ବ୍ୟବସାୟ, ବର୍ଣ୍ଣ ବା ଜାତି ଓ ଶେଷରେ ବଡ଼ ଘରେ ରୋଗୀମାନଙ୍କର କୁଷ୍ଠ ହୋଇଛି କି ନା, ଥିଲେ ତାହା ସଂକ୍ରାମକ ପରି ଦିଶେ କି ଅନ୍ୟ ପ୍ରକାର ଦିଶେ ଓ ଲେଖାପଢ଼ା ଅନ୍ୟ କୌଣସି ମନ୍ତବ୍ୟ ଟିପି ରଖିବେ । ଲୋକେ ତା ପରେ ବିଶ୍ୱାସ ସ୍ଥାପନ କଲେ ପରୀକ୍ଷା କରିବାକୁ ତାଙ୍କୁ ଅନୁମତି ଦେଇ ପାରନ୍ତି । ତାହା କଲେ ସେ ଲୋକଙ୍କୁ କୁଷ୍ଠ ସମ୍ବନ୍ଧେ କିଛି ଜାଣିଥିବା ଡାକ୍ତରଙ୍କୁ ଡାକି ଆଣିବେ । ତାଙ୍କରି ଅନ୍ୟାନ୍ୟ ଘର ପୂର୍ଣ୍ଣ ହୋଇଥିବା ଡାକ୍ତରଙ୍କ ଦ୍ୱାରା ଶେଷ ଘର ପୂରଣ କରାଯିବ । ଏ ସବୁ କାମ ସରିଲେ ଗ୍ରାମର ଗୋଟିଏ ମୋଟାମୋଟି ମାନଚିତ୍ର ଟାଣିବା ଦରକାର । ସେଥିରେ ଭିନ୍ନ ଭିନ୍ନ ଘର ଦେଖାଯିବ । ଅଣ୍ଡୁଆ କୁଷ୍ଠ ରୋଗୀ ଘରେ କଳା × ଦାଗ ଦେବେ ଏବଂ ଡିଆଁ ରୋଗୀ ଘରେ ଲାଲ × ଦାଗ ଦେବେ । ଏ ହିସାବରୁ ବିପଦ ଥିବା ସ୍ଥାନଗୁଡ଼ିକ ଦେଖାଯିବା ମତେ

ଜଣାଯିବ । ଏହା ଦ୍ୱାରା ସେ ତାଙ୍କ କାମରେ ଆଗେଇ ପାରିବେ
କୌଣସି ଲୋକ ଆପତ୍ତି କରି ଚିଠି ଡାକରେ ପାଇଁ ସମ୍ବାଦ ନ ଯୋଗା-
ଇଲେ କାମୀ ଅତିଶୟ ବିରକ୍ତ ନହୋଇ ବଳାତ୍କାର କରି ଖବର
ବାହାର କରିବେ । ସେମାନଙ୍କ ସାହାଯ୍ୟ ପାଇଁ ସମ୍ବାଦ ସଂଗ୍ରହ କରନ୍ତି
ଚୋର ଜାଣି ପାରିଲେ ଯେମେ ସେମାନେ ନଇଁ ଯିବେ ଏବଂ ବେଳ
ହେଯାଇବେ । ଏହି ଅବସରରେ ଗ୍ରାମର ମାନଚିତ୍ରରେ ସେମାନଙ୍କ
ଘର ବର୍ତ୍ତମାନ ପର୍ଯ୍ୟନ୍ତ ପରୀକ୍ଷା କରାଯାଇ ନାହିଁ ବୋଲି
କୌଣସି ପ୍ରକାରେ ଚିହ୍ନ କରି ରଖିବ । ଯେଉଁ ଘରେ ଡ଼ଆଁ ରୋଗ
ଥିବ, ସେଠାରେ କ୍ରିମିଂଦଶ ପାଠରେ ନିୟମ ସବୁ ଚଳାଇବ । ଏ ସବୁ
ଉପାୟ ସମାଜର ସାଧାରଣ ସ୍ୱାସ୍ଥ୍ୟର ଉନ୍ନତି କରେ । କୁଷ୍ଠରୋଗ ନିବା-
ରଣ କରିବା ଯେତେ ସହଜ, ଆରୋଗ୍ୟ କରିବା ସେତେ ସହଜ
ନୁହେଁ । ଏ କଥା ସେ ମନେରଖିବେ । ଉପରେ ଲିଖିତ ବିଷୟ ପ୍ରତି
ସେମାନଙ୍କ ଦୃଷ୍ଟି ଆକର୍ଷଣ କରି ପାରିଲେ ରୋଗ ସଂକ୍ରମଣରୁ ସମାଜ
ରକ୍ଷା କରି ରୋଗର ମୂଳ ଉପାଡ଼ି ହେବ । ଏହା ସମାଜକୁ ହେବ
ତାର ମହତ୍ ଦାନ । ପ୍ରଥମେ କାର୍ଯ୍ୟ ସଫଳ ନହେଲେ ହତୋତ୍ସାହ
ହେବ ନାହିଁ । ସହିଷ୍ଣୁତା ଓ ଅଧ୍ୟବସାୟ ବଳରେ ଜୟ ଲାଭ ହୁଏ ।
ଚିକିତ୍ସା ସମ୍ବନ୍ଧେ ଏ କଥା ବୁଝି ରଖିବ ଯେ ଅନେକ ଡାକ୍ତର କୁଷ୍ଠ
ରୋଗର ବିଶେଷ ଚିକିତ୍ସା ଜାଣନ୍ତି ନାହିଁ । ଇଞ୍ଜେକ୍ସନ ଦେଇ
ସେମାନେ ବହୁ ସମୟ ଗଡ଼ାଇ ଦେବେ; ଫଳ କିଛି ହେବ ନାହିଁ ।
ଅନେକ ରୋଗୀଙ୍କ ପ୍ରବୀଣ ଡାକ୍ତର ଚିକିତ୍ସା କରିସୁଦ୍ଧା ବାରମ୍ବାର ବିଫଳ
ହୋଇଥାନ୍ତି । ଏ କଥା ମନେ ରଖିବାକୁ ହେବ ଯେ (କ) କୁଷ୍ଠ
ରୋଗର ନିର୍ମୂଳ ଆରୋଗ୍ୟ ନାହିଁ ଏବଂ (ଖ) କୁଷ୍ଠ ରୋଗର ପ୍ରକୃତ ଓ
ଚିକିତ୍ସାରେ କିଛି ଶିକ୍ଷା ପାଇଥିବା ଡାକ୍ତରଙ୍କ ଦ୍ୱାରା ଯାହା କିଛି ଚିକିତ୍ସା

## Fig. No. 26 A.

**Name of Village** *15/6, Paikpara Road*

**Thana.** *Tala 50, Barakpore T Road.*

**District.**

**Population**

**Notes on Village.**

*It is reported that No 1 got the infection from No 5 who used to mix with them frequently On investigation it is found that the locality is a big mahommodan basti having thickly situated tiled huts The sanitary condition of this part is very bad the people use water from poluted tanks On enquiring 4 cases were detected in the locality*

*On further enquiry another case a maid sweeper of (30 Barrakpore Tank Road ) who is attending the S T M out-door clinic, was found in this place On tracing her family living in a similar basti described above near this fourteen cases in two houses were detected Most of the cases are closely related to one another and to the infectious cases.*

**Map of Village.**



# Fig. No. 26 B.

କାର୍ଡ଼ର ଉଭୟ ପାର୍ଶ୍ୱ । କାର୍ଡ଼ ପୂର୍ଣ୍ଣ ହୋଇଗଲେ ଗ୍ରାମ ସେବକୀୟ
ଅନ୍ୟାନ୍ୟ କାଗଜ ପତ୍ର ସହିତ ତାହା ଗୁନ୍ଥି ରଖିବେ ।

| Serial Number. | Name. | Regtd Number | Age. | Sex | Caste | Type | Duration | Remarks. |
|---|---|---|---|---|---|---|---|---|
| 1. | Nizamuddin | | 7 | M | Md | N2 | 1 yr | Gol inf from No 5 |
| 2 | Kari Bibi | Wife | 18 | F | do | N1 | " | |
| 3 | Zaffwr ali | | 30 | M | do | N2 | 15 yrs | From own Village |
| 4 | Sk Panchoo | | 56 | M | do | N2 C1 | 10 " | |
| 5 | Fakir | | | | | | | |
| 6 | Kapwri | Bhagalpur | 65 | M | Methar | C3 | 9 yrs | In Cossipur since boyhood wife healthy |
| 7 | Rikha | do | 40 | M | do | C3 | 6 " | Father of No 8 Ditto wife healthy |
| 8 | Probhabati | do | 5 | F | do | N1 | 4 months | Doughter of No 7 |
| 9 | Ratni | do | 15 | F | do | N2 | 3 yrs | Cal 6 mths worked Saidpur E B girl infected there |
| 10 | Fulu | do | 33 | M | do | N1 | 7 " | Now working Cossipur Gun factory |
| 11 | Kartie | do | 25 | M | do | C1 | 4 months | Corporation sweeper |
| | 26/32. | Dum | Dum | Road | Same hal | | | |
| 12 | Golap chamar | Cal Born | 25 | M | Chamar | C3 | 8 yrs | Next door to No 6 //Cont work Brother of No 13 |
| 13 | Lakhia | do | 16 | F | do | N1 | 4 months | Sister of No 12 |
| | 26/33 | Dum | Dum | Road | Same house | | | |
| 14 | Baiju | Dumka | 22 | M | Methar | N2 | 2 yrs. | Corpn. sweeper W 32 |
| 15 | Ram nath | Banka | 12 | M | do | N2 | 3 months | Student of Corpt School at 26 Gun foundry Rd |
| 16 | Muri lal | Bhagalpur | 33 | M | do | N1 | 1 yr | |
| 17 | Sitabia | do | 26 | M | do | C1 N2 | 2 yrs. | Corpn sweeper W 32 |

| Dates of Visits. | Initial. | Dates of Visits. | Initial. | Dates of Visits. | Initial. |
|---|---|---|---|---|---|
| | | | | | |

କରାଇବ । ଚିକିତ୍ସା ସମ୍ବନ୍ଧ ସପ୍ତମ ପାଠରେ ଦିଆଯାଇଥିବା ଉପଦେଶ ଗୁଡ଼ିକରେ ରୋଗୀର ମନ ଲାଗିଲା ପରି ଯତ୍ନ କରିବ । ଜିଲ୍ଲା ବୋର୍ଡ଼ ପ୍ରତିଷ୍ଠିତ କୁଷ୍ଠ ଚିକିତ୍ସା କେନ୍ଦ୍ର ବା ମିଶନ ଚିକିତ୍ସାଳୟ ବା ଦାତବ୍ୟ ଚିକିତ୍ସାଳୟରୁ ସାହାଯ୍ୟ ନେଇହେବ । ତିଆରି କରିଥିବା ଘର-ଚିଠି ଓ ଗ୍ରାମ ଚାର୍ଟ ଜିଲ୍ଲା ବୋର୍ଡ ସଭାପତିଙ୍କୁ ଦେଖାଇବ । ନୂତନ ଦିଲ୍ଲୀଠାରେ ଥିବା ରେଡ଼କ୍ରସ୍ ସଙ୍ଘର ସୁପରିଣ୍ଟେଣ୍ଡେଣ୍ଟଙ୍କ ଠାରୁ "ମଫସଲରେ କୁଷ୍ଠ ନିବାରଣ ସଙ୍ଗଠନ" ବିଷୟରେ ଲେଖା ପତ୍ର ଆଣାଇବାପାଇଁ ଅନୁରୋଧ କରିବ । ସେଥିପ୍ରତି ସଭାପତିଙ୍କର ଧ୍ୟାନ ନହେଲେ ଯେଉଁମାନଙ୍କର ଧ୍ୟାନ ଅଛି ସେମାନଙ୍କୁ ସେ ଚିଠି ସବୁ ଦେଖାଇବ । ସହସ୍ତ୍ର ହେଲେ ରୋଗର ଚିକିତ୍ସା ନିଜେ କରି ନପାରିଲେ ଏହି ଭାବରେ ଚିକିତ୍ସାର ସୁବିଧା କରାଇଦେବ । ୨୬ ନମ୍ବର ଚିତ୍ରରେ ଘର ଚିଠିର ନମୁନା ଦେଖ ।

କର୍ମୀ ଅନ୍ୟ ଏକ ସେବା କାର୍ଯ୍ୟ କରିବ । ଏହା ରୋଗୀର ପଥ୍ୟ ବିଷୟରେ । ଦ୍ୱାଦଶ ପାଠରେ ଥିବା ଉପଦେଶ ଗୁଡ଼ିକ ପାଠ କରିବ । ଗ୍ରାମର ଧନୀ ଲୋକେ ଦୁଧ, ଡ଼ାଲି ଓ ପରିବା ଗରିବ ରୋଗୀଙ୍କୁ, ଦାନ କରିବାର ଯତ୍ନ ନେବ । ଯେଉଁ ରୋଗୀମାନେ ସେତେ ଗରିବ ନୁହନ୍ତି, ସେମାନେ ଭଲ ସନ୍ତୁଳିତ ଖାଦ୍ୟ ଖାଇଲାପରି ଦୃଷ୍ଟି ଦେବ । ଏଥିରେ କୃତକାର୍ଯ୍ୟ ହେଲେ କର୍ମୀ ସେ ପାଖ ପଡ଼ୋଶୀ ଲୋକଙ୍କର ନଜରେ ଭଲ ହୁକୁର ହୋଇ ପାରିବ । ଗ୍ରାମର ସାଧାରଣ ନିର୍ମଳତା ବୃଦ୍ଧି କରିବା ମଧ୍ୟ ଦରକାର । ଏଥିହିଁ ଦ୍ରୁତତରେ ଚିକିତ୍ସାରେ ସାହାଯ୍ୟ କରେ ।

ଶେଷ କଥା, ଗ୍ରାମର ଯେଉଁମାନଙ୍କର କୁଷ୍ଠ ରୋଗ ଅଛି, ସେମାନଙ୍କର ଚିକିତ୍ସା ବନ୍ଧୁ ଭାବରେ କରାଇ ନେବ । ସେ ସେମାନଙ୍କ

ପାଖକୁ ଯିବାକୁ ବନ୍ଦ କରେନାହିଁ, ସେମାନଙ୍କର ମଙ୍ଗଳକାମନା କରେ, ସେମାନଙ୍କ ଅବସ୍ଥା ଭଲ ହେବ ବୋଲି ବିଶ୍ୱାସ କରେ, ଏ ରୋଗ ସେମାନଙ୍କର କୌଣସି ଦୋଷରୁ ହୋଇନାହିଁ । ଯେତେଦୂର ପାରିବ, ସେମାନଙ୍କୁ ସେ ସାହାଯ୍ୟ କରିବ ବୋଲି ସେମାନେ ବୁଝି ଯିବା ଦରକାର । ଏହା ବୁଝିଲେ ସେମାନେ ମନ ସୁଖରେ ଦିନ କାଟିବେ । ମନ ସୁଖ ଚିକିତ୍ସାର ପ୍ରଧାନ ସହାୟ । ପଞ୍ଚମ ପାଠରେ, ନବମ ଚିତ୍ରରେ ଦେଖିବ, ପ୍ରଫୁଲ୍ଲ ମନ ଓ କର୍ମଠ ଲୋକଙ୍କୁ କୁଷ୍ଠ ରୋଗ ପ୍ରାୟ ଆକ୍ରମଣ କରେ ନାହିଁ । ପ୍ରାଚୀନ କଥା ଅଛି, ମନ ସୁଖହିଁ ରୋଗର ଉତ୍କୃଷ୍ଟ ଔଷଧ । କୁଷ୍ଠ ଚିକିତ୍ସା ସମ୍ବନ୍ଧରେ ମନସୁଖହିଁ ପ୍ରଧାନ ଔଷଧ ।

ପ୍ରଥମ ଅଧ୍ୟାୟର ପାଠମାନଙ୍କରେ ଦିଆଯାଇଥିବା ଉପଦେଶ ସାହାଯ୍ୟରେ କର୍ମୀ ଯଥାସାଧ୍ୟ କାର୍ଯ୍ୟ କରିବ । ସଦ୍ୟ ଫଳ ଆଶା କରିବ ନାହିଁ । ସେ ବୀଜ ବୁଣିଦେବ, ତାର ଫଳ ବହୁବର୍ଷ ପର୍ଯ୍ୟନ୍ତ ଦେଖାଯିବ ନାହିଁ । ଆଜିହିଁ ଫଳ ଫଳିବ ବୋଲି ଆଶା ନ ପୋଷି ଭବିଷ୍ୟତ ପାଇଁ କାର୍ଯ୍ୟ କରିବା ହେଉଛି ପ୍ରତ୍ୟେକ ଦେଶ ପ୍ରେମୀର କର୍ତ୍ତବ୍ୟ ଓ ଅଧିକାର ।

କଥାବାର୍ତ୍ତା ଛଳରେ କୁଷ୍ଠ ସମ୍ବନ୍ଧେ କର୍ମୀ ନିମ୍ନଲିଖିତ ତଥ୍ୟ ସବୁ ଲୋକଙ୍କୁ କହି ରଖିବ—

## କୁଷ୍ଠ ରୋଗ ସମ୍ବନ୍ଧେ ତଥ୍ୟ

(୧) ଘାସ ଯେପରି ଘାସରୁ ଜାତ, କୁଷ୍ଠ ସେପରି କୁଷ୍ଠ ରୋଗରୁ ଜାତ ।

(୬) ଏହା ବଂଶଗତ ରୋଗ ନୁହେ; ଏକା ଶେଜରେ ଶୋଇବା, ଏକ ଘରେ ବାସ କରିବା, ଏକାସାଙ୍ଗରେ ରଜଘର ହେବା ଦ୍ୱାରା ରୋଗୀଠାରୁ ଏହା ସଂକ୍ରମିତ ହୋଇ ଆସେ ।

(୩) ଲୋକଙ୍କର ଗତାଗତ ନଥିବା ଅନିର୍ମଳ ଖୋଲା ବାଡ଼ରେ ଘାସ ମାଡଯାଏ । ଅନିର୍ମଳ ଦେହରେ କୁଷ୍ଠ ରୋଗ ବଢିଥାଏ ।

(୪) ମାଲେରିଆ, କଳାଜ୍ୱର, ଦଣ୍ଡିପୋକ, ଅଜୀର୍ଣ୍ଣ, ଆମାଶୟ ଇତ୍ୟାଦି କ୍ଷୀଣକାରକ ରୋଗ ଦ୍ୱାରା, ସ୍ତ୍ରୀ ଠାରୁ ସଂକ୍ରମିତ ଉପଦଂଶାଦି ରୋଗଦ୍ୱାରା, କମଅଣ୍ଡିଆ ଖାଦ୍ୟ, ଅଯଥାର୍ଥ ଖାଦ୍ୟ, କୁ-ଅଭ୍ୟାସ ଓ ବେଶ୍ରାମ ଦ୍ୱାରା ଦେହ ଅନିର୍ମଳ ରହେ ।

(୫) କୁଷ୍ଠ ରୋଗୀକ ନଛୁଇଁ ରହିବା ସହଜ ହୋଇ ନ ପାରେ । କିନ୍ତୁ ଯେଉଁ ସବୁ କାରଣରୁ ଦେହ ଅପରିଚ୍ଛନ୍ନ ରହେ, ସେ ସବୁ ଦୂର କରିବା ଶକ୍ତି ତୁମର ଅଛି ।

(୬) ସବୁ ଅବସ୍ଥାରେ ଘାସର ବୀଜ ହୁଏ ନାହିଁ । କୁଷ୍ଠର ମଧ୍ୟ ସେହିପରି । ବର୍ଷ ବର୍ଷ ପରେ ଦେହର ଅନ୍ତଃସ୍ଥଳରେ ରୋଗ ଚେର ମୂଳ ମାଡ଼ି ବସିଲାପରେ ବୀଜ ଅର୍ଥାତ୍ ରୋଗ ବୀଜାଣୁ ଜାତ କରେ । ସେତେବେଳେ ତଦ୍ୱାରା ଲୋକଙ୍କର ବିପଦ ହୁଏ ଏବଂ ତାର ଆରୋଗ୍ୟ ମଧ୍ୟ କଷ୍ଟକର ହୁଏ ।

(୭) ଚେରମୁ ଗଛରୁ ତାକୁ ଉପାଡ଼ି ପକାଅ ।

(୮) ଛୋଟ ଛୋଟ ଛିଟିଏ, ସେଥିରେ ଚେତନା ଯଦି ନ ଥାଏ; ବହୁଲିଆ ରଙ୍ଗୀନ ଛିଟ, ଯାହା ହାସପାତାଲ୍ ମଲମ ଲଗାଇଲେ ସୁଦ୍ଧା

ଭଲ ନହୋଇ ବଢି ଯାଉଥାଏ; ମୋଟାହେବା ସ୍ଥାନଟିଏ ଯେଉଁ ଥି
ବାନ୍ଧଣା ହୁଏ, ଏ ସବୁ କୁଷ୍ଠ ରୋଗର ପ୍ରଥମ ସଙ୍କେତବୋଲି ସନ୍ଦେ
କରିବ ।

(୯) ଏହି ଅବସ୍ଥାରେ ପୂର୍ଣ୍ଣ ଚିକିତ୍ସା କଲେ ପ୍ରାୟ ସକଳରୋ
ଭଲ ହୋଇ ପାରିବ ।

(୧୦) ବିଜ୍ଞାନ ଶାସ୍ତ୍ର ଚର୍ଚ୍ଚା ଆରମ୍ଭ ମାତ୍ର ହେଲାବେଳେ
ଇଉରୋପରୁ କୁଷ୍ଠରୋଗକୁ ତଡ଼ି ଦିଆଯାଇ ଥିଲା । ଆଜିକି ବିଜ୍ଞାନ
ବହୁ ଉନ୍ନତ ହୋଇଛି । ଏ ଅବସ୍ଥାରେ ଲୋକେ ମନଦେଲେ ଆମ
ଦେଶରୁ କୁଷ୍ଠ ରୋଗକୁ ତଡ଼ି ଦିଆଯାଇ ପାରିବ ।

* ସମାପ୍ତ *